ପ୍ରଣେତା :
ଶ୍ରୀ ନୀଳଲୋହିତ ସିଂହଦେବ
ପଞ୍ଚାୟତ

ପ୍ରକାଶିକା :
ଶ୍ରୀମତୀ ବିଜୟଲକ୍ଷ୍ମୀ ଦେବୀ
ଖଡ଼ିଆଳ ରାଜପ୍ରାସାଦ, ଖଡ଼ିଆଳ
୭୬୬୧୦୭

ପ୍ରଥମ ମୁଦ୍ରଣ : ୫୦୦ (୧୯୮୪)

ମୁଦ୍ରଣ :
ଗୋସ୍ୱାମୀ ପ୍ରେସ୍
ଆଲାମଚାନ୍ଦ ବଜାର, କଟକ ୭୫୩୦୦୨

ମୂଲ୍ୟ — ଟ ୫-୦୦ (ପାଞ୍ଚ ଟଙ୍କା)

# ଅନ୍ତର୍ବ୍ୟଥା'ର କବି

ଅନ୍ତର୍ବ୍ୟଥାର କବି ନୀଳଲୋହିତ ପ୍ରକୃତି ଓ ଜନଜୀବନର ଶାଶ୍ୱତ-ଧର୍ମ, ପ୍ରେମ-ଜିଜ୍ଞାସାକୁ ଭିତ୍ତି କରି ଏକ ଅଭିନବ ବିଷୟ ସଜ୍ଜାରେ ଆପଣାର ଭାବ ପ୍ରକଟ କରିଛନ୍ତି । ମାନବ ପ୍ରବୃତ୍ତିର ସତ୍ୟଫଳକ ପ୍ରେମର ବିଲୟ ନାହିଁ । ପ୍ରକୃତି-ଜଗତରେ ପ୍ରେମ ବିରହ ଓ ମିଳନର ଏକ ସାନ୍ନିଧ୍ୟ ସୂତ୍ର । ପ୍ରକୃତି ମାନବ ଉଭୟଙ୍କର ଜୀବନଚର୍ଯ୍ୟାର ଲୀଳାମୟ ରୂପ ପ୍ରେମର ଭାବ ଗ୍ରନ୍ଥିରେ ଗ୍ରଥିତ । ପତି ପତ୍ନୀର ଭାବ ଘେନି ସୂର୍ଯ୍ୟ ଓ ପଦ୍ମିନୀ ଯୁଗେ ଯୁଗେ ଅମର । ଆଦି କାଳର କବିଦୃଷ୍ଟି ଏମାନଙ୍କର ଅକ୍ଷତ ପ୍ରେମ-ତପସ୍ୟାକୁ ନାନା ଭଙ୍ଗୀରେ ରୂପାୟିତ କରିଛି । ଅଦ୍ୟାବଧି ସେହି ପ୍ରେମ ରୂପକର ବିଲୟ କାବ୍ୟ ଜଗତରୁ ଘଟି ନାହିଁ ।

କବି ନୀଳଲୋହିତ ପ୍ରେମର ଏହି ପାରମ୍ପରିକ ରୂପକ ସତ୍ତାଟିକୁ ଆଧାର କରି ଆପଣାର କଳ୍ପନାଶ୍ରୟୀ ଅବବୋଧକୁ ସହଜ ଓ ସରଳ ଭଙ୍ଗୀରେ କାବ୍ୟାୟିତ କରିଛନ୍ତି । ବାରିଦର ଆବରଣରେ ସୂର୍ଯ୍ୟ ସରୋଜପ୍ରିୟା ଠାରୁ ଆପଣାକୁ ଦୂରେଇ ନେଇଛନ୍ତି । ପଦ୍ମିନୀର ନିର୍ଦ୍ଦୋଷ ଆତ୍ମା ବିରହ ଦୁଃଖରେ ଶରବ୍ୟ । ଅନୁଶୋଚନା ଓ ଯାତନାର ଜ୍ୱାଳାରେ ଦଗ୍ଧିଭୂତା ପଦ୍ମିନୀ ପ୍ରତି ରାତ୍ରିର ନାୟକଗଣ କେହିହେଲେ ଆଗେଇ ଆସି ନାହାନ୍ତି । ପ୍ରକୃତିର ଏହି ରୂପକ ଦୃଶ୍ୟଟିରୁ କବି ଏକ ସାମାଜିକ ସତ୍ୟର ସନ୍ଦେଶ ଲାଭ କରିପାରିଛନ୍ତି—

ପର ଦୁଃଖେ ଦୁଃଖୀ କିଏ ଅଛି ଏ ଜଗତେ
ବିଜଡ଼ିତ ନିଜ ନିଜ ସ୍ୱାର୍ଥରେ ସମସ୍ତେ ।।

ଯଦି ବା ଥିବେ କେ କାହିଁ ହୋଇ ନିଷ୍ପେଷିତ
ନ ଆସନ୍ତି କବି ନେତ୍ରେ ଅହୋ ! କି ବିଚିତ୍ର ।।

ଆସିଲେ ବା କି କରିବେ ନ ଥିଲେ ଶକତି
କରିବାକୁ ବିଭଞ୍ଜନ ଦୁଃଖିନୀ ବିପତ୍ତି ।।

ପଦ୍ମିନୀର ବିରହ ଦୁଃଖ କବି ମନରେ ସନ୍ଦେହର ଧୂମ୍ର କୁହେଳୀ ସୃଷ୍ଟି କରିଛି । ପଦ୍ମିନୀକୁ ପରିତ୍ୟାଗ କରି ସନ୍ଧ୍ୟାବାଳୀ କୋଳରେ ଆତ୍ମ-ଗୋପନ କରିଥିବା ନାୟକ ସୂର୍ଯ୍ୟଙ୍କ ଆଚରଣ, ଆମ ସଂସ୍କୃତି, ଜୀବନାଗ୍ରହ ଓ ଦର୍ଶନର ପରିପନ୍ଥୀ । ଆର୍ଯ୍ୟ ଜୀବନର ପ୍ରତିକୂଳ । କବି ଏହି ମର୍ମରେ ସୂର୍ଯ୍ୟର ନାୟକ ବ୍ୟକ୍ତିତ୍ୱକୁ ବିଶ୍ଳେଷଣ କରିଛନ୍ତି । ଅମ୍ଭୋଜିନୀଠୁ ବିଦାୟ ନେଇ ସନ୍ଧ୍ୟାର

ଅଧର ମଦ୍ୟପାୟୀ ସୂର୍ଯ୍ୟର ଗୋପନ ସନ୍ଦେଶ କବିଙ୍କୁ ଉନ୍ମାଦିତ କରିଛି । ଏହା ତାଙ୍କ ପକ୍ଷରେ ପାପ ପୁଣ୍ୟ, ଆଦର୍ଶ ଅନାଦର୍ଶର ଶତଛିଦ୍ର ଖୋଲେଇ ଦେଇଛି । ସ୍ରଷ୍ଟାଙ୍କ ଉଦ୍ଦେଶ୍ୟରେ ତାଙ୍କ ମନରେ ଶତ ପ୍ରଶ୍ନର କୁହେଳି–

କହ ମୋତେ ସୃଷ୍ଟିକର୍ତ୍ତା ! କେଉଁ କୁତୂହଳ
ବହି କରିଅଛ ସୃଷ୍ଟି ଏ ବିଶ୍ୱ ମଣ୍ଡଳ ।।

ତବ ସୃଷ୍ଟ ସଂସାରେ କି ଧରମର ସ୍ଥାନ
ଟିକେ ସୁଦ୍ଧା ନାହିଁ, କହ କହ ଭଗବାନ ! ।।

ଧର୍ମ ପଥ ଅନୁସରି ନିଜେ କଷ୍ଟ ସହି
ଅନ୍ୟର ମଙ୍ଗଳ ପାଇଁ ଯେହୁ ଥାଏ ରହି ।।

ଶେଷ ପରିଣାମ ତାର ହୁଏ କି ଏମନ୍ତ ?
ଦୁଃଖ ପରେ ଦୁଃଖ ତାକୁ ମିଳେ କି ସନ୍ତତ ।।

ତା ଦୁଃଖରେ ଦୁଃଖୀ ହୋଇ ଦୁଃଖୁଁ ପରିତ୍ରାଣ
କରିବାକୁ ତାକୁ ନାହିଁ କି କେ ଶକ୍ତିବାନ ।।

କିନ୍ତୁ କବିଙ୍କ ମନଶ୍ଚକ୍ଷୁରେ ପ୍ରଜ୍ଞାଙ୍କ ଉଦୟ କବି ମନରୁ ସବୁ ସନ୍ଦେହ ଦୂର କରିଛି । ପ୍ରଜ୍ଞା ହିଁ ଚେତନାର ସୂର୍ଯ୍ୟାଲୋକ । ସକଳ ତମିସ୍ରା, ଅନ୍ୟାୟ, ଅନୀତିର ବିନାଶକ ଏଇ ପ୍ରଜ୍ଞା । ଯିଏ ସ୍ଥିତପ୍ରଜ୍ଞ ସିଏ ସିନା ଶୁଦ୍ଧ ଚେତନାର ଅନୁଭବୀ । ମଣିଷର ବିଚଳିତ ମନ, ସବୁ ସଂଶୟ କାଳିମାର ସିଂହଦ୍ୱାର । କବିଙ୍କ ଅଭିବ୍ୟକ୍ତିରୁ ସ୍ପଷ୍ଟ ହୋଇଛି–ପ୍ରଜ୍ଞାର ସାରଥି ଉଷାରାଣୀ ହିଁ ଶୁଦ୍ଧ ଚେତନାର ସଂବାହକ । ଏହି ପ୍ରଜ୍ଞା ରୂପକଟିକୁ କବି ଭାରତୀଙ୍କ ସହିତ ସମନ୍ୱିତ କରିଛନ୍ତି । ଏହା ଭାରତୀୟ କାବ୍ୟ ତତ୍ତ୍ୱ ସମର୍ଥିତ । ପ୍ରଜ୍ଞା ହିଁ କବି ଶକ୍ତିର ଅନ୍ୟତମ ବିଶିଷ୍ଟ ଉପକରଣ । ପ୍ରଜ୍ଞାଚକ୍ଷୁରେ କବି ସୃଷ୍ଟିକୁ ଦେଖେ, ଭାବ ଆହରଣ କରେ, ପରିପାଳନ କରି ପରିବେଷଣ କରେ ରସଭୋଜ୍ୟ । କବିଦୃଷ୍ଟି ତେଣୁ ରସଦୃଷ୍ଟି, ବୋଧଦୃଷ୍ଟି ଓ ପ୍ରଜ୍ଞାଦୃଷ୍ଟିର ସମାହାର ।

ଅନ୍ତର୍ବ୍ୟଥାର କବି ବୟସରେ ତରୁଣ ହେଲେ ବି ଭାବ ବିଳାସରେ ପ୍ରବୀଣ ପରି ମନେହୁଅନ୍ତି । ତାଙ୍କ ଚେତନାରେ ରସଦୃଷ୍ଟି, ବୋଧଦୃଷ୍ଟି ଓ ପ୍ରଜ୍ଞାଦୃଷ୍ଟିର ସ୍ୱଚ୍ଛନ୍ଦ ପ୍ରକାଶ ଘଟିଛି । ଚମତ୍କାର ପଦବିନ୍ୟାସ ହିଁ କବିଙ୍କର ରସ ଦୃଷ୍ଟିର ପରିଚାୟକ । ଗମ୍ଭୀର ଭାବ ଓ ଆଦର୍ଶ ଅବବୋଧର ଅଙ୍ଗୀକାର ହିଁ ତାଙ୍କର ବୋଧଦୃଷ୍ଟି ଓ ପ୍ରଜ୍ଞାଦୃଷ୍ଟିର ସୂଚକ ।

ଅନ୍ତର୍ବ୍ୟଥା ଏକ ଦୀର୍ଘ କବିତା । ଛନ୍ଦ, ଅଳଙ୍କାର ସଂଯୋଜନା, ଭାବ ସଞ୍ଚାରେ ଏହା ଖୁବ୍ ହୃଦୟଗ୍ରାହୀ ହୋଇଛି । ପରମ୍ପରାର ଯଥାର୍ଥ ଉତ୍ତରାଧିକାର କବି ନୀଳଲୋହିତଙ୍କ କାବ୍ୟକଳାରେ ସାର୍ଥକ ହୋଇଛି । କବି ଆପଣାକୁ ଏଇ କବିତାର ଏକ ଚରିତ୍ର ରୂପେ ପ୍ରକାଶ କରିଛନ୍ତି । ପ୍ରକୃତି ହୋଇଛି ତାଙ୍କର ସୃଷ୍ଟି ପ୍ରେରଣାର ଉତ୍ସ । କବି, ଶୈଳୀ ଓ ଭାବ ଭିତରେ ସାମଞ୍ଜସ୍ୟ ସ୍ଥାପନ କରିପାରିଛନ୍ତି । ଶୈଳୀ ଯେପରି ଶୁଦ୍ଧ, ଆଳଙ୍କାରିକ ଭାବ ସେହିପରି ଆଦର୍ଶଦୀପ୍ତ ଓ ଗମ୍ଭୀର । କବି ନୀଳଲୋହିତଙ୍କ କ୍ରମ ଉତ୍ତରଣ ଘଟି ଆମ ସଂସ୍କୃତି, ପରମ୍ପରା, ସତ୍ୟ-ସୌନ୍ଦର୍ଯ୍ୟ ଓ ଆନନ୍ଦ ଅନୁଭୂତିର ଉଚ୍ଚାଙ୍ଗ କାବ୍ୟ ରୂପ ପ୍ରକାଶ ପାଉ—ଏହା ହିଁ କାମନା ।

ସାରସ୍ୱତ ନିଳୟ — କ୍ଷେତ୍ରବାସୀ ନାୟକ
ଶ୍ରୀ ଅରବିନ୍ଦ ନଗର
କଟକ
ତା ୨୨ । ୧୧ । ୮୩

# ବିଜ୍ଞାପନ

ସହୃଦୟ ପାଠକପାଠିକାବୃନ୍ଦ,

ଅତି ପୁରାତନ କାଳରୁ ହିଁ ସାହିତ୍ୟ ଜଗତରେ ସୂର୍ଯ୍ୟ ଓ ପଦ୍ମିନୀ ପତି ପତ୍ନୀ, ପ୍ରେମିକ ପ୍ରେମିକା ଭାବେ ପରିକଳ୍ପିତ । ସେହି ସୂର୍ଯ୍ୟ ଓ ପଦ୍ମିନୀକୁ ମୁଖ୍ୟ ନାୟକ ନାୟିକା ରୂପେ ଗ୍ରହଣ କରି 'ଅନ୍ତର୍ବ୍ୟଥା' ପ୍ରକାଶ ପାଇଛି । ଏହି କାବ୍ୟରେ କାଳର ପ୍ରଭାବରେ, ସୂର୍ଯ୍ୟ ପରିସ୍ଥିତିର ଦାସ ହୋଇ ଅନୁଚିତ (ଆର୍ଯ୍ୟସଂସ୍କୃତି ବିରୋଧୀ) କାର୍ଯ୍ୟ କରି ପକାଇଛନ୍ତି, ତାଙ୍କ ଧୃଷ୍ଟତା ପ୍ରକାଶ ପାଇଛି, କିନ୍ତୁ ଶେଷରେ ଈଶ୍ୱରଙ୍କ ସହାୟତାରେ ତାଙ୍କର ବ୍ୟକ୍ତିତ୍ୱ ବିକଶିତ ହୋଇ ସେ ଅନ୍ୟ ପରିବେଶକୁ ଆସିଯିବାର ଆଶା ପୋଷଣ କରାଯାଇଛି ।

ମନୁଷ୍ୟ ପରିସ୍ଥିତିର ଦାସ ଏବଂ ପରିସ୍ଥିତି/ପରିବେଶ ହେଉଛି କାଳର ପ୍ରଭାବ ମାତ୍ର । ମନୁଷ୍ୟ, ଯୋଗ ଓ ଭୋଗ ଉଭୟ ଦିଗରେ ଗତି କରି ପାରିବାର ଯେଉଁ ସ୍ୱାତନ୍ତ୍ର୍ୟ ପାଇଛି, ସେହି ସ୍ୱାତନ୍ତ୍ର୍ୟ ବଳରେ ଅନୁଭୂତି ଦ୍ୱାରା, ଅଧ୍ୟୟନ ଦ୍ୱାରା, ଅନ୍ୟ କୌଣସି ପ୍ରକାରେ ଜ୍ଞାନ ଅର୍ଜନ କରି ଜ୍ଞାନ ଯୋଗେ ନିଷ୍ଠାବଳରେ କୁସଙ୍ଗତି/ପରିସ୍ଥିତିକୁ ବର୍ଜନ କରି ଅନ୍ୟ ପରିବେଶକୁ ଯିବା ପାଇଁ ଚେଷ୍ଟା କରିବାର ଶକ୍ତି ଅଛି ଏବଂ ସେହି ଚେଷ୍ଟାର ପ୍ରଗତିରେ ଈଶ୍ୱରଙ୍କ ସହାୟତା ରହିଛି । ଏଣୁ ଅସାଧାରଣ ବ୍ୟକ୍ତିତ୍ୱ ପରିସ୍ଥିତିର ଦାସ ହୋଇ ସର୍ବଦା ରହିପାରେ ନାହିଁ, ବରଂ ପରିସ୍ଥିତି/ପରିବେଶକୁ ସେ ତାର ଅନୁକୂଳ କରାଏ ।

ସୂର୍ଯ୍ୟ ଓ ପଦ୍ମିନୀର ପରସ୍ପର ପ୍ରେମ ଗଭୀର ଏବଂ ତାହା ଦୈହିକ ସୁଖରେ ସୀମିତ ନ ରହି ପରୋପକାରରେ ନ୍ୟସ୍ତ । ଯେତେବେଳେ ସୂର୍ଯ୍ୟ ବିଚ୍ଛେଦରେ ହେଉ ବା ମିଳନରେ ହେଉ ପଦ୍ମିନୀ ପ୍ରତି ପ୍ରେମଲିପ୍ତ ସେତେବେଳେ ସେ ପରୋପକାର କରିବାକୁ ସକ୍ଷମ ହୋଇଛନ୍ତି । କିନ୍ତୁ ଯେତେବେଳେ ସେ ଧୃଷ୍ଟତାଚରଣ କରିଛନ୍ତି—ପ୍ରେମ ବିକ୍ଷିପ୍ତ ହୋଇ ଉଠିଛି, ସେତେବେଳେ ସେ ଆଉ ପରୋପକାର କରିବାକୁ ସକ୍ଷମ ହୋଇପାରି ନାହାନ୍ତି । କାଳର ପ୍ରଭାବରେ ପରିସ୍ଥିତିର ଦାସ ହୋଇ ବ୍ୟକ୍ତିତ୍ୱ ହରାଇବାରୁ ତାଙ୍କର ପରୋପକାରାଦି ସୁଗୁଣକୁ କାମ ଓ କାମନା ନଷ୍ଟ କରିଛି । କାଳର ଅଧୀନରେ ଚରାଚର ଗ୍ରହ ନକ୍ଷତ୍ର ସବୁ କିଛି (ଈଶ୍ୱର ବ୍ୟତୀତ) ପରିଚାଳିତ ଥିବାରୁ ସମସ୍ତଙ୍କ ଉପରେ ତାର ପ୍ରଭାବ ରହିବା ସ୍ୱାଭାବିକ । କାଳର ଅଧୀନରେ ଯଦି ସବୁକିଛି ନ ଥାନ୍ତା ତେବେ ସୃଷ୍ଟିର ମହତ୍ତ୍ୱ ଆଉ କଣ ?

ପ୍ରେମ ଆପେ ଆପେ ହୁଏ ଅର୍ଥାତ୍ ଈଶ୍ୱର ଇଚ୍ଛାରେ ହିଁ ହୁଏ; ହେଲେ ହେଁ ପ୍ରେମ ଜାତ ହେବାରେ ଚରିତ୍ରର ସହାୟତା ନିଶ୍ଚୟ ରହିଛି । ସୁଚରିତ୍ର ବିନା ପ୍ରେମ ଅସମ୍ଭବ । ପ୍ରାଣୀମାନଙ୍କ ମଧ୍ୟରେ କେବଳ ମାନବ ହିଁ ଉପଲବ୍ଧି କରୁଛି ଯେ, ଅଛି ଏକ ଅଦୃଶ୍ୟ ଶକ୍ତି ଯାହା ବିଶ୍ୱ ବ୍ରହ୍ମାଣ୍ଡକୁ ନିୟନ୍ତ୍ରଣ କରୁଛି । ସେହି ଶକ୍ତି ପ୍ରତ୍ୟେକ ପ୍ରାଣୀକୁ ସ୍ୱାତନ୍ତ୍ର୍ୟ ଦେଇଥିଲେ ହେଁ ସେମାନେ ପ୍ରକୃତିର ଅଧୀନ, କିନ୍ତୁ ମାନବକୁ ପୂର୍ଣ୍ଣ ସ୍ୱାତନ୍ତ୍ର୍ୟ ଦେଇଛି – ଏଣୁ ସୃଷ୍ଟିର ରହସ୍ୟ ଉନ୍ମୋଚନ ପାଇଁ ତାର ଆକାଂକ୍ଷା ଜନ୍ମେ । ସେହି ସ୍ୱାତନ୍ତ୍ର୍ୟ ମାନବର ଚରିତ୍ର ଗଠନର ସହାୟକ; ଏଣୁ ପ୍ରେମ ଆପେ ଆପେ ହୁଏ ନ ବୋଲି ପ୍ରେମ କରାଯାଏ ବୋଲିବା ଅସଙ୍ଗତ ନୁହେଁ । ସୁଚରିତ୍ର ହିଁ ଅଦୃଶ୍ୟ ଶକ୍ତିକୁ ବିଶ୍ୱାସ କରିବା ଅର୍ଥାତ ଭଗବତ୍ ବିଶ୍ୱାସୀ ହେବା ଭାବ ଜାତ କରାଏ । ଯେତେବେଳେ ସେହି ଈଶ୍ୱର ବିଶ୍ୱାସ କାମ, କ୍ରୋଧ, ଲୋଭ, ମୋହ ଦ୍ୱାରା ଅବଦମିତ ହୁଏ ସେତେବେଳେ ପାଶବିକତା ଜାଗି ଉଠେ । ପ୍ରେମ ହିଁ ମାନବିକତା । ମାନବେତର ପ୍ରାଣୀ ପାଖରେ ଯେ ପ୍ରେମ ନାହିଁ, ତାହା ନୁହେଁ – ମାତ୍ର ସେମାନଙ୍କ ପ୍ରେମ କେତୋଟି ସୀମିତ ସ୍ତରର ।

ଆଜି ସମାଜରେ, ଦେଶରେ, ବ୍ୟକ୍ତି ପାଶରେ ମାନବିକତା ଅଚିନ୍ତନୀୟ ଭାବେ ହ୍ରାସ ପାଇଛି । ବ୍ୟକ୍ତି ଆତ୍ମକୈନ୍ଦ୍ରିକ ହୋଇଯାଇଛି । ସେ ନିଜେ ନିଜର ପାଇଁ ହିଁ ବଞ୍ଚି ରହିଛି, ଯଦ୍ୟପି ସେ ନିଜେ ନିଜକୁ ନେଇ ଚଳିପାରୁ ନାହିଁ, ଚଳିପାରିବ ନାହିଁ । ଏଣୁ ଦେଖାଯାଉଛି ବିଶୃଙ୍ଖଳା, ଅଶାନ୍ତି, ବିଭ୍ରାଟ । ଯେ ସତ୍ୟପ୍ରିୟ, ନ୍ୟାୟପ୍ରିୟ, ସରଳ ହୃଦୟ ସେ ଆଜି ଅନ୍ୟାୟର ବନ୍ଧନୀ ଭିତରେ ନିଷ୍ପେଷିତ, ବିଦଳିତ । ଏହି ପରିସ୍ଥିତିକୁ କାଳର ପ୍ରଭାବ ବୋଲିବା ଅବଶ୍ୟ ସ୍ୱୀକାର୍ଯ୍ୟ । ଯେତେବେଳେ କାଳ ପ୍ରାଣୀ (ମନୁଷ୍ୟ) ଦ୍ୱାରା ଅପମାନିତ ହୁଏ ଅର୍ଥାତ ମନୁଷ୍ୟ ଯେତେବେଳେ ସମୟର ସଦୁପଯୋଗ କରେ ନାହିଁ, ସେତେବେଳେ କାଳ ଶକୁନି ପରି ତାର ପ୍ରଭାବ ପକାଏ, ଶକୁନି ଯେପରି ଦୁର୍ଯ୍ୟୋଧନ ଦ୍ୱାରା ଅପମାନିତ ହୋଇ ପୁଣି ତାର ପ୍ରିୟ ପାତ୍ର ହୋଇ ଶେଷରେ ତାର ବିନାଶର କାରଣ ହେଲା । ଏଣୁ ମନ୍ଦ କର୍ମ ସଂସାରରେ ଅତି ସହଜରେ ହୋଇଯାଏ । ଏହା ସୃଷ୍ଟିର ନିୟମ, କାଳର କର୍ତ୍ତବ୍ୟ ।

ସମୟ ଥିଲା ମନୁଷ୍ୟ ଆସ୍ତିକ ଥାଇ ତାର ମନୁଷ୍ୟତା ବଜାୟ ରଖିବାରେ ଯତ୍ନଶୀଳ ଥିଲା । ଆଜି ନାସ୍ତିକ ସ୍ୱାର୍ଥୀ ମନୁଷ୍ୟ ଅନ୍ୟର ଗଳ-ଗ୍ରହ ହୋଇ, ଦୈହିକ ଇନ୍ଦ୍ରିୟ ସୁଖରେ ବିଜଡ଼ିତ ଥାଇ ସମାଜକୁ, ଦେଶକୁ, ଜାତିକୁ କିପରି କଳୁଷିତ, ପୀଡ଼ିତ, ନିର୍ଯ୍ୟାତିତ କରିବା ସଙ୍ଗେ ସଙ୍ଗେ ପ୍ରକୃତିର ନୈସର୍ଗିକତାକୁ କଳୁଷିତ କରିବା ଦ୍ୱାରା ଆତ୍ମଘାତ ହିଁ କରୁଛି–ଏହା ହିଁ ଅନ୍ତର୍ବ୍ୟଥା । ଏ ବ୍ୟଥାର କଣ ଅନ୍ତ ନାହିଁ ? ଅଛି–ସତ୍ୟ ଧର୍ମର ଚିରନ୍ତନତାରେ ।

ଏହି କାବ୍ୟରେ ସମ୍ପୂର୍ଣ୍ଣଭାବେ ପ୍ରାଚୀନ ଚିନ୍ତାଧାରକୁ ଗ୍ରହଣ ନ କରି କେତେକ ସ୍ଥଳରେ ନୂତନ ଭାବଧାରା ଦିଆଯାଇଛି । ଏଣୁ କେତେକ ସ୍ଥଳରେ ପ୍ରାଚୀନ ରୂଢ଼ିର ବ୍ୟାଘାତ ଘଟିଛି । ଏହି ବ୍ୟାଘାତ କାବ୍ୟର ଅଙ୍ଗ ସୌଷ୍ଠବକୁ ହାନି କରିଛି କି ନାହିଁ ତାହା ପାଠକମାନଙ୍କ ବିଗ୍ଭର୍ଯ୍ୟ ।

ଏହି 'ଅନ୍ତର୍ବ୍ୟଥା' ରଚନାରେ ମୋର ସୁହୃଦ୍ ଶ୍ରୀ ବୀରଭଦ୍ର ପଣ୍ଡା ଉତ୍ସାହିତ କରିଥିବାରୁ ସେ ଧନ୍ୟବାଦାର୍ହ । କେତେ ବନ୍ଧୁ ଅତ୍ୟାଧୁନିକ କବିତା ଲେଖିବା ପାଇଁ ଉତ୍ସାହ ପ୍ରଦାନ କରୁଥିଲେ ସୁଦ୍ଧା ମୁଁ ତହିଁରେ ଉତ୍ସାହିତ ହୋଇପାରୁ ନାହିଁ । ଏହା ମୋର ସୌଭାଗ୍ୟ କି ଦୁର୍ଭାଗ୍ୟ, ମୋତେ ଜଣା-ନାହିଁ । ସେ ଯାହାହେଉ ସେ ବନ୍ଧୁମାନେ ମୋର ହିତାକାଂକ୍ଷୀ ହୋଇଥିବାରୁ ସେମାନେ ମଧ୍ୟ ଧନ୍ୟବାଦର ପାତ୍ର ।

| | |
|---|---|
| ଖଡ଼ିଆଳ | ଭବଦୀୟ |
| ତା ୧୬ । ୧୦ । ୧୯୮୩ | ନୀଳଲୋହିତ ସିଂହଦେବ |
| ବିଜୟା ଦଶମୀ | ରଚୟିତା |

# ଅନ୍ତର୍ବ୍ୟଥା

## ଚତୁର୍ଦ୍ଦଶାକ୍ଷରୀ

### କଳଶା

ଧରାକୁ ଆସିଣ ସନ୍ଧ୍ୟା-ବାଳୀ ସୂର୍ଯ୍ୟେ ଚାହିଁ
ବୋଇଲେ, "ହେ ସୂର୍ଯ୍ୟ ! ସୁରା ଚାଖିଛ କି ନାହିଁ ।୧।

ସୁରା ନ ପିଅଇ ଯେହୁ ବୃଥା ତା ଜୀବନ
ସୁଖାଚଳ ଶିରେ ଦେଇ ନ ପାରେ ଚରଣ ।୨।

ଦେଖ ମୁହିଁ କି ସୁଖରେ ଅଧର ରଞ୍ଜନ
କରୁଛି ମଦ୍ୟରେ ପୁଣି ହରଷ ବର୍ଦ୍ଧନ ।୩।

ମଦ ପିଇ ସବୁବେଳେ ରହେଁ ମୁଁ ମାତାଲ
ବିଲୋଚନ ମମ ସଦା ଦିଶେ ଗାଢ଼ ଲାଲ ।୪।

ଦଶ ଦିଶ ଦିଶେ ଯେହ୍ନେ ସୁରାରେ ଧଉତ-
ହୋଇ ଅବିରଳ ସତେ ହୋଇଛନ୍ତି ପୂତ ।୫।

ପାତାଳ ସରଗ ମର୍ତ୍ତ୍ୟ ଦିଶେ ଏକାକାର
ରାଜିଲେ ହେଁ ଯମ, ନାହିଁ ମରଣ ବିକାର ।୬।

ଦେଖ ରବି ! ଯେତେବେଳେ ଥାଇଣ ଗଗନେ
ରତଥିଲ ପଦ୍ମିନୀର ସାଥେ ଆଲିଙ୍ଗନେ ।୭।

ସ୍ୱର୍ଗ-ସୁଖୁଁ ବଳି ସୁଖ କଲ ଅନୁଭବ
ସତ ଏହା, କିନ୍ତୁ ହେଉଁ ମେଘର ଉଦ୍ଭବ ।୮।

ତବ ସୁଖଶିରୀ ସବୁ ହୋଇଗଲା ହତ
କିନ୍ତୁ ପଦ୍ମିନୀର ଶିର ହେଲାନାହିଁ ନତ ।୯।

କାମାତୁରା ନାରୀ ସେହି ତୁମକୁ ହରାଇ
ଗାଢ଼ ପ୍ରେମେ ରତ ହେଲା ଭ୍ରମରକୁ ଚାଇ ।୧୦।

ଏ ରୀତିକୁ ଚାହିଁ ମେଘ ପଦ୍ମିନୀକୁ ବୋଲେ
ଲାଜ ନାହିଁ ଭ୍ରମରକୁ ଧରିଅଛୁ କୋଳେ ।୧୧।

ମୁଁ କି ଆସିଥିଲି ତୋତେ ନେବାକୁ ଛଡ଼ାଇ
ରବି-କର-ବନ୍ଧନରୁ ଦୁଃଖରେ ଭସାଇ ।୧୨।

ତୋହ ସତୀତ୍ୱ ପରୀକ୍ଷା କରିବାକୁ ସିନା
ବିଧିର ପ୍ରେରଣେ ଆସିଥିଲି ଲୋ ନବିନା !।୧୩।

ତୋହର ଏ ରୀତି ଦେଖି ମମ ପରାଣରେ
ଜଳୁଅଛି ରୋଷ-ଅଗ୍ନି ଦ୍ୱିଗୁଣ ତେଜରେ ।୧୪।

ଗରଜି ଗରଜି ପୁଣି ବୋଲେ ରାଗେ ଘନ
ଉପଯୁକ୍ତ ଶାସ୍ତି ତୋତେ ଦେବିରେ ବହନ ।୧୫।

ଏସନ ଭାଷିଣ ରୋଷେ ସଲିଳ ବରଷି
ଗଲିଗଲା ମେଘ ବ୍ୟୋମୁଁ ବ୍ୟଙ୍ଗ ହସ ହସି ।୧୬।

ପଦ୍ମିନୀ ହୋଇଲା କ୍ଷଣ ମାତ୍ରକେ ବିବଶା
ମାଡ଼ ବରଷିଲେ କେହୁ ନ ଲଭେ ସେ ଦଶା ।୧୭।

ତହୁଁ ତୁମେ ଦେଖି ପୁଣି ପଦ୍ମିନୀର ମୁଖ
ଲାଭ କଲ ଦୁଃଖ ସଙ୍ଗେ କି ଅପାର ସୁଖ ।୧୮।

ତୁମ ବିରହେ ପଦ୍ମିନୀ ଥିଲା ଦୁଃଖେ ବୋଲି
ସ୍ନେହମୟୀ-ଦୃଷ୍ଟିଦେଲ ଦ୍ୱିଗୁଣରେ ବୋଳି ।୧୯।

ଦେଖ ଏବେ ପଦ୍ମିନୀକି, ଦେଖି ମୋ ବଦନ
ପୋତିଦେଲା ଲାଜେ ସଡ଼ି ତା ଗ୍ରୁ ଲପନ ।୨୦।

ଏହାର କାରଣ ହେଲା, ତା କୁଳଟା ରୀତି
ଜଣା ମୋତେ, ପୁଣି ତାର ତବ ପ୍ରତି ପ୍ରୀତି ।୨୧।

ଦେଖ ଦେଖ ଦେଖ ରବି ! ରଥାଙ୍ଗ ମିଥୁନେ
ଶତଦଳ-ଦଳ ତଳେ ଥିଲେ ମହାଶୁନେ ।୨୨।

କରୁଥିଲେ ପରସ୍ପରେ ପୀରତି ରଚନା
ବନଜିନୀ ମୁଖ ଗ୍ରହିଁ ହୋଇ ପ୍ରୀତମନା ।୨୩।

ଶୁଖାଇ ଦେବାରୁ ଏବେ ପଦ୍ମିନୀ ତା ମୁଖ
ତା ଦୁଃଖରେ ଦୁଃଖୀ ହୋଇ ତେଜି ନିଜ ସୁଖ ।୨୪।

କାନ୍ଦିକାନ୍ଦି ବୁଲୁଛନ୍ତି କମଳ କାନନେ
ଜ୍ୟୋତି ବଦଳରେ ଅଶ୍ରୁ ତାହାଙ୍କ ଆନନେ ।୨୫।

ପଦ୍ମିନୀର ପତ୍ର ତାଙ୍କୁ ଦେଇଥିଲା ଛାୟା
ପଦ୍ମିନୀର ପ୍ରତି ତେଣୁ ମମତା ଓ ମାୟା ।୨୬।

କରନ୍ତେ ଯଦ୍ୟପି ଦୁହେଁ ମଦିରା ସେବନ
ଏ ଯେତେ ଯାତନା ତାଙ୍କ ହୁଅନ୍ତା ମୋଚନ ।୨୭।

ପଦ୍ମିନୀରେ ଚକ୍ର ଦମ୍ପତିର ଯେ ପୀରତି
ପଦ୍ମିନୀ କି କରେ ତେତେ ପ୍ରୀତି ତବ ପ୍ରତି ? ।୨୮।

କି ସୁଖ ତୁମ୍ଭର ଅଛି କହ ହେ ସବିତା !
ତୁମ୍ଭ ପ୍ରଣୟିନୀ ହେଲା ଆନରେ ସେବିତା ।୨୯।

ଆସ ଆସ ଆସ ରବି ! କରୁଛି ଆହ୍ୱାନ
ଦୁହେଁ ମିଳି କରିବା ତ କାଦମ୍ବରୀ ପାନ ।୩୦।

କରିବା ପୁଣି ତ କେତେ ସଙ୍ଗୀତ ଗାୟନ
ସ୍କନ୍ଧ ଧରାଧରି ହୋଇ ନୃତ୍ୟ ବିରଚନ ।୩୧।

ତୁମେ ବା ବୋଲିବ ବିନା ମୂଲ୍ୟରେ ବାରୁଣୀ
ବାରୁଣୀ-ମନ୍ଦିର-ପତି ଦେବ କି ତରୁଣି ! ।୩୨।

ତହିଁ ପାଇଁ ବିରୋଚନ ! ନ କର ଚିନ୍ତନ
ରଖିଅଛି ଗୋଟାକେତେ ମହାର୍ଘ ରତନ ।୩୩।

କୁକ୍ଷିରେ ଯା ବିନିମୟେ ସୁଖେ ଦେବା ଭରି
ଛାକ-ଛାକ-ସୁଧା-ବଳି-ସ୍ୱାଦୁ-କାଦମ୍ବରୀ" ।୩୪।

ଏହା କହି ସନ୍ଧ୍ୟା-ବାଳୀ କାଢ଼ିଲେ ରତନ
ସେ କେତୋଟି ତାରାରୂପେ ମଣ୍ଡିଲେ ଗଗନ ।୩୫।

ବୋଇଲେ ସେ ପୁଣି, "ରତ୍ନ କି କରିବା ଆଉ
ବ୍ୟୋମେ ଥାଇ ବ୍ୟୋମ ଶୋଭା ବଢ଼ାଉ ସେ ଥାଉ ।୩୬।

କି ଲୋଡ଼ା ମୁଁ ସ୍ୱୟଂ ଥିଲେ ପଇସା ପତର
ଘେନି ମୋ ବଚନ ଆସ ଆସ ଦିବାକର" ।୩୭।

ସନ୍ଧ୍ୟା-ବାଳୀ ଭଙ୍ଗି ଦେଖି ରସିକ ତପନ
ଅନୁରାଗ ବଶେ ହୋଇ ଲୋହିତ ବରଣ ।୩୮।

ଛାର-ଅଶ୍ୱିନୀ-ପ୍ରଣୟ-ବିଚଳିତ-ମନ
ବଳାଇଥିଲେ ଦେବାକୁ ତା ଗଣ୍ଡେ ଚୁମ୍ବନ ।୩୯।

ବିଗ୍ଭରି ବିଗ୍ଭରି ପୁଣି, "ରଖିଲେ ତା' ଭାଷା
ଶୋଭାବତୀ ବାମା ପୂର୍ଣ୍ଣ କରିବ ମୋ ଆଶା ।୪୦।

ଏଣୁ ମୁହିଁ ସୁରା ପାନ କରିବି କି ନାହିଁ"
ବାରୁଣୀ-ମନ୍ଦିର ଦ୍ୱାରେ ହୋଇଥିଲେ ଯାଇ ।୪୧।

ଉପଗତ, ଶୁଣି ଶୁଣି ସନ୍ଧ୍ୟା-ବାଳୀ ଗୀର
ଶେଷେ ସୁରା ପାନ କରିବାକୁ କରି ସ୍ଥିର ।୪୨।

ବାରୁଣୀ-ମନ୍ଦିରୋଦରେ ଅମ୍ଭୋଜିନୀ ବର
ପରବେଶି ହେଲେ ବିଶ୍ୱ ନେତ୍ରୁ ଅଗୋଚର ।୪୩।

ଗଲେ ରବି, ଗଲା ସନ୍ଧ୍ୟା, ଅନ୍ଧାର ମେଦିନୀ
ଭାଳି ଭାଳି ମହା ଦୁଃଖେ ସଢ଼ିଲା ପଦ୍ମିନୀ ।୪୪।

× × × × ×

ପଦ୍ମିନୀର କଷ୍ଟ ଦେଖି ବିଗ୍ଭରଇ କବି
ବିନା ଦୋଷେ ତାର ଶିରେ ପଡ଼ିଲା ତ ପବି ।୪୫।

ଭାରତୀୟ ସଂସ୍କୃତିର ବିଧ୍ୱଂସ-କାରିଣୀ
ମାତାଳିନୀ ସାୟଂବେଳା ନାୟିକା ରୂପିଣୀ ।୪୬।

ଆସି ଏଣୁ ତେଣୁ ନାନା ଭଙ୍ଗିରେ ବଚନ
ପରକାଶି ବିମୋହିତ କଲା ଭାନୁ ମନ ।୪୭।

ଧନ୍ୟ ଧନ୍ୟ ଧନ୍ୟ ରବି ! ତବ ଭାବନାକୁ
ପଶ୍ଚାତ୍‌ପଦ ହେଲ ନାହିଁ ମାତାଲ ହେବାକୁ ।୪୮।

ସନ୍ଧ୍ୟା-ବାଳୀ ସୌନ୍ଦର୍ଯ୍ୟରେ ହୋଇ କି ମୋହିତ
ବିବେକ ଶକ୍ତିକୁ ତବ ହାରିଲ ତ୍ୱରିତ ? ।୪୯।

କିବା 'ସନ୍ଧ୍ୟା' ବଚନକୁ କରିଣ ବିଶ୍ୱାସ
ପଦ୍ମିନୀର ପ୍ରଣୟକୁ ମଣିଲ ଉଶ୍ୱାସ ? ।୫୦।

ଭାବିଲକି ପଦ୍ମିନୀକୁ କୁଳଟା ବୋଲିଣ
ଛାଡ଼ିଲକି ତେଣୁ ତାକୁ ବିରାଗ ବହିଣ ? ।୫୧।

ସନ୍ଧ୍ୟା-ବାଳୀ ହୋଇଲା କି ସତୀ ଶିରୋମଣି ?
ହେଲା ଯଦି ସତୀ ସେହୁ କହ ହେ ତରଣି ! ।୫୨।

କି ରୂପେ ତୁମକୁ ଦେବ ପ୍ରଣୟ ବିନୋଦ ?
ପାଇ ତା ପ୍ରଣୟ କେହ୍ନେ ଲଭିବ ବା ବୋଧ ? ।୫୩।

ସତୀ କେବେ ହୋଇ ପାରେ କି ସ୍ୱେଚ୍ଛାଚାରିଣୀ
ହୋଇ କି ପାରଇ ସେହୁ ସତ୍ୟ ବିନାଶିନୀ ? ।୫୪।

ଲଙ୍ଘନ କରି କି ସେହୁ ପତିବ୍ରତା ଧର୍ମ
ଆନ ପୁଂଷ ସଙ୍ଗେ କି ସେ କରିପାରେ ନର୍ମ ? ।୫୫।

ସତ ବୋଲି ଯଦି ସୂର୍ଯ୍ୟ ! 'ସନ୍ଧ୍ୟା'ର ଭାରତୀ
ବିଚାରିଲ ତେବେ କହ ନେଇ କି ଯୁକତି ।୫୬।

ମଦ୍ୟ ପାନେ ଅତି ମତ୍ତ ହୋଇଥିବା ଜନ
ହୋଇ କି ପାରଇ କେବେ ବିଶ୍ୱାସଭାଜନ ? ।୫୭।

ରହି କି ପାରଇ ଅବା ସୌନ୍ଦର୍ଯ୍ୟର ଉତ୍ସ
ତାର କଳେବରେ ? ନିଶ୍ଚେ ନିଶ୍ଚେ ସେହୁ ତୁଚ୍ଛ ।୫୮।

ନ ଥାଏ ତା ସୁବିଚାର ମାନ ସମ୍ମାନର
ଗୁରୁଜନେ ମଧ୍ୟ ସେହୁ କରେ ବେଖାତର ।୫୯।

ନୁହଇ ପଦ୍ମିନୀ କେବେ କୁଳଟା, ଅସତୀ
ନାହିଁ ପାପ ହୃଦେ ତାର, ସଦା ଶୁଭ୍ର ମତି ।୬୦।

ଚାରି ଜାତି ନାରୀ ମଧ୍ୟେ ଶ୍ରେଷ୍ଠା ରମଣୀରେ
ତେଣୁ ସିନା ଆରୋପିତ ତା ନାମ ମହୀରେ ।୬୧।

ଭ୍ରମର କି ହୋଇପାରେ ଉପପତି ତାର ?
ନାହିଁ ନାହିଁ ନାହିଁ, ଏ ତ ବାଳିଶ ବିଚାର ।୬୨।

ସୁମଧୁର ମଧୁ ପାନ କରିବା ପାଇଁକି
ଆସିଥାଏ ଭୃଙ୍ଗ ସିନା ପଦ୍ମିନୀ କତିକି ।୬୩।

ବାତ୍ସଲ୍ୟ ସ୍ନେହରେ କୋଳେ ଧରି ସରୋଜିନୀ
ଭୃଙ୍ଗେ ମଧୁ ଦିଏ ହୋଇ ମଙ୍ଗଳକାରିଣୀ ।୬୪।

କରାଏ ଯେସନ ସ୍ତନ୍ୟପାନ ସ୍ନେହଭରେ
ଜନନୀ ତା ସନ୍ତାନକୁ ବସାଇ କୋଳରେ ।୬୫।

ଭ୍ରମର ଅଟଇ ନିଶ୍ଚେ ପଦ୍ମିନୀ ଅପତ୍ୟ
ହୋଇଅଛି ତା'ରେ କୃଷ୍ଣ ବର୍ଣ୍ଣ ଉପଗତ ।୬୬।

ଘନ-କୃଷ୍ଣ-ସଂଘନନ ତାହାର ନମୁନା
ରବି-ସୁତା-ସୁତ ଶନି କୃତାନ୍ତ ଯମୁନା ।୬୭।

ସନ୍ଧ୍ୟା-ରାଣୀ ମୁଖ ଦେଖି ଶିଶୁମାନେ ଯେହ୍ନେ
ଖେଳିବୁଲି ଧାଇଁଆସି ମାତୃକୋଳ ସ୍ନେହେ ।୬୮।

ବିମଣ୍ଡନ କରିଥାନ୍ତି, କିବା ମଦ୍ୟପକୁ
ଦେଖି ଭୟବଶ ହୋଇ ଥରାଇ ହୃଦକୁ ।୬୯।

ସେହିପରି ମାତାଳିନୀ 'ସନ୍ଧ୍ୟା'ର ବଦନ
ଭ୍ରମର ଭ୍ରମରୀ କରିବାରୁ ଦରଶନ ।୭୦।

ମିଳିଲେ ପଦ୍ମିନୀ ପାଶେ, ପୁରଣୀ ହିଁ ସତେ
ଘୋଡ଼ାଇ ରଖିଲା ତାଙ୍କୁ ପାଖୁଡ଼ା-ପଣତେ ।୭୧।

ସନ୍ଧ୍ୟା-ବାଳୀ ହାବଭାବ ବିଭଙ୍ଗ-ବଚନ
ଯୋଗୁଁ କରିଥିଲା ସେହୁ ନାସିକା କୁଞ୍ଚନ ।୭୨।

ବିଷମ ଆଶଙ୍କା ପୁଣି ଜାଗିଥିଲା ମନେ
ତାକୁ ଛାଡ଼ି ତା'ର ସ୍ୱାମୀ 'ସନ୍ଧ୍ୟା'ର ଲପନେ ।୭୩।

ପ୍ରେମବଶେ ଦେବେ କାଳେ ଉଷୁମ ଚୁମ୍ବନ
ଯେଣୁ ଜାଣିଥିଲା, "କିଛି ନ ଭାବି ପୂଷଣ ।୭୪।

ଅଳୀକ ସୁଖର ପାଇଁ ଧୃଷ୍ଟତାଚରଣ
କରଣରେ ବେଳେ ବେଳେ ବଢ଼ାନ୍ତି ଚରଣ" ।୭୫।

ସେ ଆଶଙ୍କାବଶେ ସିନା ପୋତିଦେଲା ଆସ୍ୟ
ଦେଖି ସନ୍ଧ୍ୟା-ବାଳୀ ଓଷ୍ଠେ ମଦିରାର ଲାସ୍ୟ ।୭୬।

ପୁଣି ପଦ୍ମିନୀ-ମର୍ଯ୍ୟାଦା-ବିରୋଧ-ବଚନ
ଶୁଣୁଥିଲେ ହେଲେ 'ସନ୍ଧ୍ୟା' ମୁଖୁଁ ବିରୋଚନ ।୭୭।

ସହ୍ୟ କରିଥିଲେ, ସେହି ସହନ ବିଶେଷ
ପଦ୍ମିନୀକୁ ଦେଇଥିଲା ବିଷାଦ ଅଶେଷ ।୭୮।

ହେଲେ ହେଁ ସେ ତିଳେ ଅବହେଳା କଲା ନାହିଁ
ଅଳିକୁ ତା କ୍ରୋଡ଼ ଦେଶେ ଧରିବାର ପାଇଁ ।୭୯।

କେବେ କେଉଁ ଜନନୀ କି ଲଭିଲେ ହେଁ ବ୍ୟଥା
ଦୂର କରି ପାରଇ କି ଅପତ୍ୟ ମମତା ? ।୮୦।

ସନ୍ଧ୍ୟା-ବାଳୀ କହିଲା ଯା ସମ୍ବୋଧି ତପନେ
ଅକଥ୍ୟ ସେ, ପରକାଶି ନୋହିବ ବଚନେ ।୮୧।

ସୁରା ପାନେ କାଣ୍ଡଜ୍ଞାନ ହୋଇଥିଲା ଲୋପ
ତେଣୁ ସିନା ପ୍ରକାଶିଲା ଭାରତୀ ଆଟୋପ ।୮୨।

ଅମ୍ଭୋଜିନୀର ସତୀତ୍ୱ ପରୀକ୍ଷା ସକାଶେ
କେବେ କାହିଁ ଘେଟିଥାଏ ପାଥୋଦ ଆକାଶେ ।୮୩।

ଦେବ ଅବା କି ସତୀତ୍ୱ ପରୀକ୍ଷା ପଦ୍ମିନୀ
ବିଷ୍ଣୁ-ଅର୍ଦ୍ଧାଙ୍ଗିନୀ-ଲକ୍ଷ୍ମୀ ତାହାର ସଙ୍ଗିନୀ ।୮୪।

କରିବାକୁ 'କୁ'କୁ ସିନା ନାନା ଶସ୍ୟକାରୀ
ବିରଞ୍ଚି ସୃଷ୍ଟିରେ ମେଘ ଗଗନ-ବିହାରୀ ।୮୫।

ଗଗନ ବକ୍ଷରେ ଯେଣ୍ହେ ହୁଏ ତା ଉଦୟ
ଗଗନ ବକ୍ଷରେ ତେଣ୍ହେ ଭଜଇ ବିଲୟ ।୮୬।

ପଦ୍ମିନୀକୁ ପ୍ରେମ-ଡୋରେ ଅର୍ଯ୍ୟମା ସହିତ
ବାନ୍ଧଛନ୍ତି ଯେଉଁ ବିଧି, ବିଧାନ ବିହିତ ।୮୭।

କରି, ସେହୁ ଦେଇଛନ୍ତି କ୍ଷମତା ମିତ୍ରଙ୍କୁ
ସୃଜିବାକୁ ପ୍ରାଣୀଙ୍କର ହିତରେ ଅଭ୍ରକୁ ।୮୮।

ସହସ୍ରକର ସହସ୍ରକରରେ ଶୋଷଣ
କରନ୍ତି ତ ନଦୀ, ନାଳ, ସାଗରୁ ଭୁବନ ।୮୯।

ସେ ଶମ୍ବର ବାଷ୍ପାକାରେ ଉଠି ନଭଦେଶେ
ଦେଖାଦିଏ ଲୋକ ହିତେ ଧୂମଯୋନି ବେଶେ ।୯୦।

ପବନରେ ଗଗନରେ ବୁଲେ ଭାସି ଭାସି
ବେଳେ ବେଳେ ବସିଯାଏ ପର୍ବତରେ ଆସି ।୯୧।

ଯହିଁ ଯହିଁ ନେଇଯାଏ ତାକୁ ପବମାନ
ତହିଁ ତହିଁ ଭାସି ଭାସି ଯାଏ ମୁମୁଗ୍ନନ ।୯୨।

ପ୍ରକାଶିତ ହୁଏ ଅଭ୍ର ଅଶ୍ୱ, ଗଜ, କାଳୀ
ରୂପେ ହର୍ମ୍ମ୍ୟ, କାପାଳିକ, ଲକ୍ଷ୍ମୀ, ବନମାଳୀ ।୯୩।

ମେଘ ମେଘ ଯୁଝିଗଲେ ଘର୍ଷଣ ଫଳରେ
ଚପଳା ଚପଳା କ୍ରୀଡ଼ା କରେ ଚପଳରେ ।୯୪।

ଘଡ଼ଘଡ଼ି ଚଡ଼ଚଡ଼ି ସେ ସଂଘର୍ଷୁ ଜାତ-
ହୋଇ, ଉପୁଜାଏ ଭୟ ହେଲେ କର୍ଣ୍ଣପାତ ।୯୫।

ଘନୀଭୂତ ହୋଇଗଲେ ସେ ବାଷ୍ପ ପଟଳ
ଧାରା ରୂପେ ଖସିଯାଇ ଚୁମେ ମହୀତଳ ।୯୬।

ଶୀତଳ ହୁଅଇ ରସା ପାଇ ସେହି ଜଳ
କୃଷିଜୀବୀ ମାନଙ୍କର ତା ମୁଖ୍ୟ ସମ୍ବଳ ।୯୭।

ବୃଷ୍ଟି ବୋଲି କହୁଁ ଆମ୍ଭେ ସେ ଧାରା ରୂପକୁ
ପୁଣି କହୁଁ ମେଘ ଢାଙ୍କେ ବିଶ୍ୱଲୋଚନଙ୍କୁ ।୯୮।

ଘୃଣିନିଧି ଢାଙ୍କିବାକୁ କାହିଁ ତାର ବଳ ?
ଢାଙ୍କେ ସିନା ଆମ୍ଭ ଚର୍ମ ନେତ୍ରକୁ କେବଳ ।୯୯।

ତେଣୁ ହୋଇଯାନ୍ତି ବ୍ରଧ୍ନ ନେତ୍ରୁଁ ଅଗୋଚର
ଆମ୍ଭେ କହୁଁ ସୂର୍ଯ୍ୟେ ଗ୍ରାସିଦେଲା ଜଳଧର ।୧୦୦।

ମେଘର କର୍ତ୍ତବ୍ୟ ସିନା କରିବା ବରଷା
ତା'ରି ଯୋଗୁଁ ଫଳ ଫୁଲେ ହସିଉଠେ ରସା ।୧୦୧।

ମହାପାପୀ ଜନ ରହିଥାନ୍ତି ଯହିଁ ଯହିଁ
ଅତିବୃଷ୍ଟି ଅନାବୃଷ୍ଟି ସତେ ତହିଁ ତହିଁ ।୧୦୨।

ଆସିଥିଲା ଅଞ୍ଜନାଭ ଗାଢ଼କଳା ଘନ
ଗଲିଗଲା ସ୍ୱକର୍ତ୍ତବ୍ୟ କରି ସମ୍ପାଦନ ।୧୦୩।

ଢାଙ୍କିଥିଲା ପଦ୍ମିନୀକି ବିଷ୍ଣୁପଦେ ଥାଇ
*"ନେତ୍ର-ପଦ୍ମ"—ଶବ୍ଦ ମାତ୍ର ଯେଣୁ ଥିଲା ପାଇ ।୧୦୪।

କାଳିକା ପରି କାଳିକା ଉଦିଲେ ଗଗନେ
ଉଦୟ ନ ହୁଏ ଭୟ କେଉଁ ଶିଶୁ ମନେ ।୧୦୫।

ତେଣୁ ସିନା ଭୃଙ୍ଗମାନେ କାଳିକା ରୂପକୁ
ଡରିମରି ଦଉଡ଼ିଲେ ପଦ୍ମିନୀ କୋଳକୁ ।୧୦୬।

---

* ମେଘ ଆମ୍ଭର ଚର୍ମ ନେତ୍ରକୁ ଢାଙ୍କେ, ସୂର୍ଯ୍ୟଙ୍କୁ ନୁହେଁ । ସୂର୍ଯ୍ୟଙ୍କୁ ତାଙ୍କ ପତ୍ନୀଠୁଁ ବିଚ୍ଛେଦ କରାଇବାର ପ୍ରୟାସ ମଧ୍ୟ ତାର ନାହିଁ । କିନ୍ତୁ "ନେତ୍ର-ପଦ୍ମ" ବୋଲି ନେତ୍ର ସହିତ ପଦ୍ମର ଯେଉଁ ସମ୍ପର୍କ ରହିଆସିଛି, ତେଣୁ ସେ ନେତ୍ରକୁ ଢାଙ୍କୁ ଢାଙ୍କୁ ପଦ୍ମିନୀକୁ ମଧ୍ୟ ଢାଙ୍କି ଦେଲା ।

ସେ ବରଷା ଫଳେ ସିନା ପଦ୍ମିନୀ ବିବଶା
ହୋଇଗଲା, ଯେଣୁ ଜଳ ଅଟଇ ତା ବସା ।୧୦୭।

ଏହି ତ ସଂସାର ରୀତି ଯେ ସମ୍ପଦେ ଜନ
ମହା ସୁଖେ ଭୋଳ ହୋଇ କାଟନ୍ତି ଜୀବନ ।୧୦୮।

ବର୍ଦ୍ଧିଗଲେ ସେ ସମ୍ପଦ ସଜୀବନେ ଗ୍ରାସେ
ମହା ବିଷମ ଅତ୍ୟନ୍ତ ଧନ ହେଲେ ପାଶେ ।୧୦୯।

ସତୀତ୍ୱ ବଳରେ ତା'ର ନୋହିଲା ମରଣ ।
ଯଦି ସେ ବା କରିଥାନ୍ତା ମରଣ ବରଣ ।୧୧୦।

ଲଭିଥାନ୍ତା ସୂର୍ଯ୍ୟପତ୍ନୀ ଭାବେ ପୁନର୍ଜନ୍ମ
ସାଧାରଣ ନୁହେଁ ଯେଣୁ ପତିବ୍ରତା ଧର୍ମ ।୧୧୧।

ଏମନ୍ତ କେ ବୀର ଅଛି ସତୀତ୍ୱ ହରଣ
କରିବ ଅବା ଛୁଇଁବ ଜ୍ୱଳିତ ଜ୍ୱଳନ ।୧୧୨।

ନା, ନା, ବୀର କରେ ନାହିଁ ନାରୀ ଅତ୍ୟାଗ୍ରର
ନାରୀ ସମାଜ ପ୍ରତି ତା ଜନନୀ ବେଭାର ।୧୧୩।।

ଛୁଇଁ ପାରେ ଦମ୍ଭ ରଖି ସେହୁ ବୈଶ୍ୱାନର
ନୁହେଁ ଭୀରୁ କାପୁରୁଷ ବା ସେ ବର୍ଷବର ।୧୧୪।

ବୀର ସଙ୍ଗେ ସତୀ ନାରୀ ମିଳନ ଉଚିତ
ଯୁଗ ଯୁଗ ହେଲା, ହୁଏ ଯୋଗ୍ୟ ବିବେଚିତ ।୧୧୫।

ମହାସତୀ-ସୀତାରାମ, ଉର୍ମିଳା ଲକ୍ଷ୍ମଣ
ନଳ ଦମୟନ୍ତୀ ସତେ ତା ଉଦାହରଣ– ।୧୧୬।

ହେ ବିଧାତା ! କହ ମୋତେ, "କେଉଁ ବିଗ୍ରରରେ ?
ଅମ୍ଭୋଜିନୀ କି ଏମନ୍ତ ପୁରୁଷର କରେ– ।୧୧୭।

ଦେଲ, ଉଚ୍ଛୃଙ୍ଖଳ ଇନ୍ଦ୍ରିଲାଳସା ଦମନ
ନ କରି, କରିଲେ ଯେହୁ ଧୃଷ୍ଟତାଚରଣ" – ।୧୧୮।

ଧୃଷ୍ଟତା ଆଚରି ଥିଲେ ସୁଦ୍ଧା ବିବସ୍ୱାନ
ଅନେକ ସୁଗୁଣ ଯୋଗୁ ଅଟନ୍ତି ମହାନ– ।୧୧୯।

ସୁଗୁଣରେ କିଏ ଅଛି ତାହାଙ୍କ ସମାନ ?
ଦେଇଛନ୍ତି ତାଙ୍କ କୋଳେ ତେଜ ପୁଞ୍ଜେ ସ୍ଥାନ– ।୧୨୦।

ତମ, ଜଡ଼ତା, ଦୁର୍ଗନ୍ଧ, ମଶକ ମାରକ
ପୁଣି ସେହୁ ନାନା ରୋଗ ଜୀବାଣୁ ନାଶକ ।୧୨୧।

ଅନ୍ୟର ମଙ୍ଗଳ ଯଜ୍ଞେ ଆତ୍ମ-ସୁଖ-ପଶୁ
ବଳି ଦିଅନ୍ତି ସେ ଆହା ସ୍ୱଚ୍ଛଭାବ ବଶୁଁ ।୧୨୨।

ନିଜେ ସୂର୍ଯ୍ୟ କରିଥିଲେ ଯେଉଁ ମେଘ ସୃଷ୍ଟି
ପଦ୍ମିନୀକି ଢାଙ୍କି ଯେହୁ କରିଗଲା ବୃଷ୍ଟି ।୧୨୩।

ତଡ଼ିପାରି ନ ଥାନ୍ତେ କି ତାକୁ ଅନାୟାସେ
କିନ୍ତୁ ନ ତଡ଼ିଲେ ବିଶ୍ୱ ମଙ୍ଗଳ ସକାଶେ ।୧୨୪।

ପ୍ରିୟାର ବିଚ୍ଛେଦୁଁ ବଳି ରସିକ ପକ୍ଷରେ ?
ଅଛି ଆଉ କେଉଁ ଦୁଃଖ କହ ବୁଧେ ! ଥରେ ।୧୨୫।

ବିରହ କଷଣ ହୋଇଲେ ହେଁ ବିଭୀଷଣ
ହସି ହସି ସୂର୍ଯ୍ୟଦେବ କରିଲେ ବରଣ ।୧୨୬।

ତହୁଁ ସେହୁ ଦେଖି ପୁଣି ପଦ୍ମିନୀର ମୁଖ
ଲାଭ କଲେ ଦୁଃଖ ସଙ୍ଗେ କି ଅପାର ସୁଖ ।୧୨୭।

ପ୍ରିୟାର ବିବଶାବସ୍ଥା କରୁଁ ବିଲୋକନ
ନ କରିବ ସ୍ୱର୍ଣ ଆହା କାହାକୁ କଦନ ? ।୧୨୮।

ହେଉନା କାହିଁକି ଯାହା କିଛି ପ୍ରତ୍ୟକ୍ଷରେ
ପୂର୍ଣ୍ଣ ଅନୁଭୂତ ହୁଏ, କାହିଁ ପରୋକ୍ଷରେ ? ।୧୨୯।

ଏଣୁ କି ପଦ୍ମିନୀ ଦଶା ନୟନ ଗୋଚର
ହୁଅନ୍ତେ ଅବା ବିଷାଦ ଲଭିଲେ ଭାସ୍କର ।୧୩୦।

କିନ୍ତୁ ସେ ବିଷାଦ ଜଗେ ନୋହିଲା ପ୍ରକାଶ
ନ କଲା କି ଏହା ତାଙ୍କ ମହିମା ବିକାଶ ।୧୩୧।

ଥିବାରୁ ଏମନ୍ତ ଗୁଣ ଉଚିତ ମଣି କି
ହେ ବିଧାତା ! ଦେଇଛ କି ତାଙ୍କୁ ନଳିନୀକି ।୧୩୨।

ଦ୍ୱିଗୁଣ ସୁଖଦ ହୁଏ ପୁନର-ମିଳନ
ବିଚ୍ଛେଦାନ୍ତେ, ଏଣୁ କିବା ଜଗତ-ନୟନ ।୧୩୩।

ସହସ୍ର କରରେ କରି ଗାଢ଼ ଆଲିଙ୍ଗନ
ପଦ୍ମିନୀର ସର୍ବ କଷ୍ଟ କଲେ ବିମୋଚନ ।୧୩୪।

ପୁଣି ପଦ୍ମିନୀର ପ୍ରତି ସନ୍ତୁଷ୍ଟ ବିଶେଷ
ଜଗତ ମଙ୍ଗଳେ ଯେଣୁ ସହି ନେଲା କ୍ଳେଶ ।୧୩୫।

ସମଧର୍ମିଣୀ ହେବାରୁ ଅମ୍ଭୋଜିନୀ ଆହା
ଅପାର ଆନନ୍ଦ ସତେ ଲଭିଲେ ତା ନାହା ।୧୩୬।

ଉଜ୍ଜ୍ୱଳରୁଁ ଉଜ୍ଜ୍ୱଳତର ତାହାଙ୍କ ବଦନ
ସେ ଆନନ୍ଦ ଯୋଗୁଁ ସିନା ହୋଇଲା ବହନ ।୧୩୭।

ସୁଖେ ଚଳୁଥିବା ବେଳେ ସପ୍ରେମେ ଦମ୍ପତି
କାହୁଁ ଆସି ସନ୍ଧ୍ୟା-ବାଳି ! ଆଣିଲୁ ବିପତ୍ତି ।୧୩୮।

ବିପତ୍ତିକୁ ଛାଡ଼ିଦେଇ ପଦ୍ମିନୀର ପାଶେ
ଗ୍ଭଲିଗଲୁ ସୂର୍ଯ୍ୟେ ନେଇ କହ କେଉଁ ଆଶେ ।୧୩୯।

ଆସି ନ ଥାନ୍ତୁ ତୁ ଯଦି ବର୍ବରୀ-ମାତାଲି !
ପଦ୍ମିନୀକୁ ଦୁଃଖ ସ୍ରୋତେ ଭସାଇ କି ଗ୍ଭଲି– ।୧୪୦।

ଯାଇ, ପଶିଥାନ୍ତେ କେଉଁ ଅସ୍ତାଚଳ କିରେ
ବାରୁଣୀ ପାନାର୍ଥେ ରବି ବାରୁଣୀ ମନ୍ଦିରେ ।୧୪୧।

ନୀଚ ଲୋକ ଅନ୍ୟ ସୁଖ କେବେହେଁ ନ ସହେ
ତା ସୁଖକୁ ଧ୍ୱଂସିବାକୁ ସଚେଷ୍ଟ ସେ ରହେ ।୧୪୨।

ଏଣୁ କି ପଦ୍ମିନୀ-ଭାଗ୍ୟ-ଈର୍ଷା-ପରାୟଣା–
ସନ୍ଧ୍ୟା ! ଆସି ଦେଇଗଲୁ ତାହାକୁ ଯାତନା ।୧୪୩।

କିବା ତେଜସ୍ୱୀ ରବିଙ୍କ ଗୁଣରେ ଆକୃଷ୍ଟ
ହୋଇ, ନାନା ଭଙ୍ଗି ଛଳେ କରି ତାଙ୍କୁ ତୁଷ୍ଟ ।୧୪୪।

ମାତିବାକୁ ତାଙ୍କ ପ୍ରେମେ ବଳାଇକି ମତି
ଆସିଥିଲୁ ସନ୍ଧ୍ୟା-ବାଳି ! କୁଳଟା-ଅସତୀ ।୧୪୫।

କୁଳଟା ହୋଇ ତୁ ନିଜେ ଦୋଷହୀନା ପ୍ରତି
ଦୋଷ ଆରୋପଣ କଲୁ କଳୁଷିତ-ମତି ! ।୧୪୬।

ନିର୍ଦ୍ଦୋଷରେ ଦୋଷାରୋପି ନିଜ ସ୍ୱାର୍ଥ ପାଇଁ
କେବେହେଲେ କାହାର ମଙ୍ଗଳ ହୋଇ ନାହିଁ ।୧୪୭।

ହୋଇ ନ ପାରିବ କେବେ ତୋ ଆଶା ପୂରଣ
କିମ୍ବା ତୋ ମଙ୍ଗଳ, ଦୁଷ୍ଟା ! ଲଭିବୁ କ୍ଷଣ ।୧୪୮।

କାହୁଁ ତୋତେ ପ୍ରାପ୍ତ ହେଲା ମହାର୍ଘ ରତନ
ଅସଦୁପାୟେ ବା କରିଥିଲୁ ଅରଜନ ? ।୧୪୯।

ଛାଡ଼ିବାରେ ତୋତେ ଦ୍ୱିଧା ବୋଧ ହେଲା ନାହିଁ
ରତ୍ନ ରାଜି ଏଣୁ, କିମ୍ବା ମଦ୍ୟ ନିଶା ପାଇଁ ।୧୫୦।

ନୋହିଲେ କି ଅବା ସତେ କେବେ କେଉଁ ଜନ
ଅକାରଣେ ଛାଡ଼ିପାରେ ଶ୍ରମାର୍ଜିତ ଧନ? ।୧୫୧।

କିମ୍ବା ଗୁଣୀ ଅର୍କ ପ୍ରାପ୍ତ ଆଶା ବଳବତୀ
ହେତେ ତୁଚ୍ଛ ଜ୍ଞାନ ହେଲା ରତ୍ନ ବ୍ରଜ ପ୍ରତି ।୧୫୨।

କିସ ବା ତୁ କରିଥାନ୍ତୁ ନେଇ ସେ ରତନ
ନିଜେ ଗଲେ ତ୍ୱିଷାମୀଶ-କମଳିନୀ-ଧନ ।୧୫୩।

ନାହିଁ କି ତୋ ପିତାମାତା ଭ୍ରାତା ବା ଭଗିନୀ
ସ୍ୱାମୀ କିମ୍ବା ଅନ୍ୟ କେହି ପରାଣ ସଙ୍ଗିନୀ ।୧୫୪।

ଭ୍ରମୁ କି ତୁ ଲୋକେ ଲୋକେ ମଦ୍ୟପାନେ ମାତି
ତୋ ବଚନେ ପଡ଼େ ଯେହୁ ସେହୁ ତୋର ସାଥୀ ।୧୫୫।

ସ୍ୱାଧୀନ ଜୀବନ ତୁହି କରୁ କି ଯାପନ ?
ଧନ୍ୟ ତୋର ସ୍ୱାଧୀନତା ଧନ୍ୟ ତୋ ଜୀବନ ।୧୫୬।

(ନାରୀ ସ୍ୱାଧୀନତା ଆହା କେଡ଼େ ଉପକାର
କିନ୍ତୁ ସମୁଚିତ ମୂଲ୍ୟ ବିନା ଛାରଖାର) ।୧୫୭।

କି କଲୁ କି କଲୁ 'ସନ୍ଧ୍ୟା' ! ଅସତ ମାର୍ଗରେ
ନିଜେ ପଡ଼ି ପକାଇଣ ଅମ୍ଭୋଜିନୀ ବରେ ।୧୫୮।

ଯାଇଥାନ୍ତେ ଯଦି ସତ କରମ ସକାଶେ
ପଦ୍ମିନୀକୁ ଛାଡ଼ି ସେହୁ ନ ରହି ଆକାଶେ ।୧୫୯।

ତା ହେଲେ ତ ନୋହିଥାନ୍ତା ଚିନ୍ତାର ବିଷୟ
କିମ୍ବା ସେ ବା ଲଭିଥାନ୍ତା ବେଦନା ଅସହ୍ୟ ।୧୬୦।

ଆନନ୍ଦେ ମଗନ ଥାନ୍ତା ହୃଦ ଭାବ ଖୋଲି
ସତ କର୍ମେ ମମ ସ୍ୱାମୀ ରତଛନ୍ତି ବୋଲି ।୧୬୧।

କିନ୍ତୁ ସେ ତ ନିଜେ ହୋଇ ସ୍ତନୟିତ୍ନୁ ସ୍ରଷ୍ଟା
ଜାଣି ଜାଣି ସବୁକିଛି ପିତୃପ୍ରସୂ ଭ୍ରଷ୍ଟା ।୧୬୨।

ଭାରତୀରେ ପଡ଼ିଣ ବାରୁଣୀ ସେବିଲେକ
କିମ୍ବା ଅଙ୍ଗ ଭଙ୍ଗିରେ ତା ହରାଇ ବିବେକ ।୧୬୩।

ଧରିଛି ଭାଲେଣି ପଦ୍ମିନୀକୁ ଏଣୁ ସିନା
ସ୍ୱାମୀ ତାର ଦୋଷଗ୍ରାହିଣୀ ବଚନରେ କିଣା ।୧୬୪।

× × × ×

ଗଲେ ରବି, ଗଲା ସନ୍ଧ୍ୟା, ଆସିଛି ଜାମିନୀ
ପିନ୍ଧି କଳା ଶାଢ଼ୀ ଚୌର-ଖଣ୍ଡଙ୍କ ସଙ୍ଗିନୀ ।୧୬୫।

ଆଗୋ ରାତ୍ରି ବାଳେ ! ଯଦି ଆସି ଦେଲ ଦେଖା
ଟାଣି କି ପାରିବ କବି ହୃଦେ ଶାତ ରେଖା ।୧୬୬।

ଆଣି କି ପାରିବ କହ ବାରୁଣୀ-ସଦନୁ
ଫେରାଇ ରବିଙ୍କି ପାପ ପୋଛି ଦେଇ ମନୁ ।୧୬୭।

ଆଣି ପାରିଲେ, ଏ କବି ତବ ଗୁଣଗାନ
କରିବ ଉର୍ଦ୍ଧ୍ୱରେ ବାହୁ ଟେକି, ଧରି ତାନ ।୧୬୮।

କିନ୍ତୁ କାହିଁ କହ ଭଲା ଅଛି ବିଭାବରି !
ପର ଉପକାର ଗୁଣ ପାଶରେ ତୁମ୍ଭରି ।୧୬୯।

ଖଣ୍ଡେ ଖଣ୍ଡକାର୍ଯ୍ୟେ କଲେ ସାହାଯ୍ୟ ଅପାର
ପରୋପକାରିଣୀ କେବେ ବୋଲାଇ ନ ପାର ।୧୭୦।

ଯେଣ୍ଣେ ସହୁଥିବା ନର ବେଶ୍ୟା ତିରସ୍କାର
ସହିଷ୍ଣୁ ବୋଲାଏ ନାହିଁ ଜୀବନରେ ତାର ।୧୭୧।

ପରୋପକାରିତା ଛାଡ଼ ପରାର୍ତ୍ତିରେ ଆର୍ତ୍ତୀ
ହେବା ଗୁଣ ନାହିଁ ତୁମ୍ଭ ପାଶେ ଆଗୋରାତ୍ରି ! ।୧୭୨।

ଏଣୁ ସିନା ଦେଖିଲେ ହେଁ ପଦ୍ମିନୀ ଯୋପନ
କରୁନାହିଁ ହୃଦେ ତବ ତୁଦନ ସ୍ପର୍ଶନ ।୧୭୩।

ନୋହିଲେ କି କରନ୍ତ ବା ତ୍ରପା କରି ତ୍ୟକ୍ତ
ମଲ୍ଲିକା ବିକାଶ ବ୍ୟାଜେ ଦନ୍ତ ପଂକ୍ତି ବ୍ୟକ୍ତ ।୧୭୪।

ବାଢ଼ି ନବ ନବ ଛଟା ଚଞ୍ଚଳ ଚଞ୍ଚଳ
ବାଦୁଡ଼ି ଉଡ଼ିବା ଛଳେ ଝାଡ଼ନ୍ତ ଅଞ୍ଚଳ ।୧୭୫।

କେବଳ ସେତିକି ନୁହେଁ, ଅକୁଣ୍ଠ ଚିତ୍ତରେ
ଅଟ ତୁମ୍ଭେ ଧୁରନ୍ଧରା ଚୌର୍ଯ୍ୟ କରଣରେ ।୧୭୬।

ଝିଙ୍କାରୀ ଝଙ୍କାର ଚୋରି କରିଣ ସୁସାରେ
ନିୟୋଜିତ କରିଅଛ କଣ୍ଠ-ବୀଣା-ତାରେ ।୧୭୭।

ବିତନିଦ୍ର ହଂସରାଡ଼ି ମୋହନ କୂଜନ
ଚୋରି କରି କରିଅଛ ନୂପୁର ନିକ୍ୱଣ ।୧୭୮।

ତଦ୍ରୂପ ଚୈଳ-ପାଇକା ଝମକ ଝମକ
ଅତି କଉଶଳେ ଆଣି ଝୁଣ୍ଟିଆ ଝମକ ।୧୭୯।

ପାଣିକୁମ୍ଭା ନିନାଦ କଙ୍କଣ କଣ-କଣ
ବିନିଦ୍ର ବିହଗ ଧ୍ୱାନ କିଙ୍କିଣି ନିସ୍ୱନ ।୧୮୦।

ଆଣିଲ କେଉଁଠୁ କହ ଅସଂଖ୍ୟ ରତନ
ନିଶୀଥିନି ! କରଇ ଯା ଦ୍ୟୁତି ବିତରଣ ।୧୮୧।

ଅବଶ୍ୟ ପାଇଛ ତୁମ୍ଭେ ସୌଭାଗ୍ୟ ବଳରେ
'ସନ୍ଧ୍ୟା' ଛାଡ଼ିଥିବା ଉଞ୍ଛ୍ୟ ରତନ ନିକରେ ।୧୮୨।

କିନ୍ତୁ ତାହାଠାରୁ ବଳି ପରାର୍ଦ୍ଧ ଗୁଣରେ
ରତ୍ନ ରାଜି ତବ ଶୋଭା ସମ୍ପାଦନ କରେ ।୧୮୩।

କୁବେର ଭଣ୍ଡାରୁ କିବା ଚୋରାଇ ଆଣିଛ
ଚୋରିତ ସମ୍ପତ୍ତି କିବା ଭାଗରେ ପାଇଛ ।୧୮୪।

ସଂସାର ଯାକର ଚୌର ମାନଙ୍କର ଠାରୁ
ଚୋରି କାରଯେ ସାହାଯ୍ୟ କରିଣ ଥିବାରୁ ।୧୮୫।

କ୍ଷପା ! ରତ୍ନ ଯୋଗେ ତବ ସୌନ୍ଦର୍ଯ୍ୟ ବଢ଼ିଛି
କିନ୍ତୁ ଭୋଗ ବିନା ତାର ମୂଲ୍ୟ ନାହିଁ କିଛି ।୧୮୬।

ସୌନ୍ଦର୍ଯ୍ୟଶାଳିନୀ ହୋଇ ଫୁଟିଲେ ହେଁ ବନେ
ବନ ଫୁଲ ଶୋଭା ଆହା ଯାଏ ଅକାରଣେ ।୧୮୭।

ମୂଲ୍ୟହୀନ କୁଚ-ଶମ୍ଭୁ ସ୍ୱାମିନୀ ବକ୍ଷରେ
ପୂଜିତ ନୋହିଲେ ସ୍ୱାମୀ କର-କମଳରେ ।୧୮୮।

ଏମନ୍ତ କହନ୍ତେ କବି ତେଜି କ୍ଷୀର-ସିନ୍ଧୁ
ଦେଖାଦେଲେ କ୍ରମେ ଆସି ବିଖଣ୍ଡିତ-ବିଧୁ ।୧୮୯।

କରନ୍ତେ ଲୋକନ ବିଖଣ୍ଡିତ ନିଶାକର
ଭାବେ ପୂର୍ଣ୍ଣ ହୋଇଗଲା କବିର ଅନ୍ତର ।୧୯୦।

ଭାବବଶେ ମନେ ମନେ ହସିଲା ତ କବି
ଦେଖି ଦେଖି ନିଶାନାଥ ବିକଳାଙ୍ଗ ଛବି ।୧୯୧।

ନ ପାରି ହୃଦୟେ ରଖି ସେ ଭାବ ସମାସ
ଗୋଟି ଗୋଟି କରି କଲା ଭବିନ ପ୍ରକାଶ ।୧୯୨।

ରତ୍ନ ଯୋଗେ ବଢ଼ିଥିଲା ନିଶାର ଯେ ଶୋଭା
ପତି ଯୋଗେ ହେଲା ଦୁଇ ଗୁଣେ ମନ ଲୋଭା ।୧୯୩।

ପତି ସିନା ରମଣୀର ସୁଯୋଗ୍ୟ ଭୂଷଣ
ପତି ପାଶେ ହୀନପ୍ରଭ ଅଳଙ୍କାର ଗଣ ।୧୯୪।

ନ ଥାନ୍ତା ଯଦ୍ୟପି ଏହି ତାରା ବ୍ୟାଜେ ରତ୍ନ
ରହିଥାନ୍ତେ ଏକମାତ୍ର ରଜନୀ-ରମଣ ।୧୯୫।

ହେଲେ ହେଁ ସୌନ୍ଦର୍ଯ୍ୟ ରାତ୍ରି ହରାଇ ନଥାନ୍ତା
ଯୁଗେ ଯୁଗେ ଶୋଭନୀୟା କାନ୍ତ ଯୋଗେ କାନ୍ତା ।୧୯୬।

ପୁଣି ହୋଇଥାନ୍ତେ ଯଦି ପୂର୍ଣ୍ଣ ଅବୟବ
ବିଖଣ୍ଡିତ ନୋହିଁ ଆହା ଯାମିନୀ-ବଲ୍ଲଭ ।୧୯୭।

ରାତ୍ରି ଶୋଭା ହୋଇଥାନ୍ତା ବର୍ଣ୍ଣନା ଅତୀତ
ହସ୍ତୁଁ ଫିଙ୍ଗିଥାନ୍ତା କବି ଲେଖନୀ ତ୍ୱରିତ ।୧୯୮।

ଚିତ୍ତାଚଳେ କରିଥାନ୍ତା ଲଜ୍ଜା-ଘନ ଗ୍ରାସ
ରାତ୍ରି ଶୋଭାକୁ ଯା କରୁଥିଲା ଉପହାସ ।୧୯୯।

କିନ୍ତୁ ଯେହୁ ଢାଳିଦେଇ ପାପ କର୍ମେ ଚିତ୍ତ
କରି ଯାଉ ଅଛି ନାନା କାର୍ଯ୍ୟ ଅନୁଚିତ ।୨୦୦।

ଫଳନ୍ତା ସୁଫଳ କେଉଁ କର୍ମ ବୃକ୍ଷେ ତାର
ତାକରା ରୋପଣ କଲେ ଫଳେ କି ରସାଳ ? ।୨୦୧।

ସୁନ୍ଦର ପୁରୁଷ ମଧ୍ୟେ ଚନ୍ଦ୍ରମା ଗଣିତ
ହେଲେ କିସ ହେବ ସେହୁ ପରା କଳଙ୍କିତ ।୨୦୨।

ଗୁରୁ ପତ୍ନୀ ଭ୍ରଷ୍ଟା କଲେ ପାପୀ ଶଶଅଙ୍କ
କାଳ କାଳକୁ ଏ କାଳ ବିରହୀ ମାନଙ୍କ ।୨୦୩।

ପୁଣି ତାଙ୍କ ପୃଷ୍ଠେ ନର ପ୍ରହାରି ଚରଣ
କରିଛି ବିଜ୍ଞାନ ବଳେ ଦେବତ୍ୱ ହରଣ ।୨୦୪।

ଚନ୍ଦ୍ରୋଦୟ ଦେଖି ଏଣେ ନରନାରୀ ଚିତ୍ତ
ସମଦ୍ରରେ ହୋଇବାରୁ ପ୍ରେମ ତରଙ୍ଗିତ ।୨୦୫।

କାହିଁ କେଉଁ ବାମା ଅଭିରାମା ଅଭିରଙ୍ଗୀ
ସ୍ତନ ଭାରେ ସୁଆନତା ନବନୀତ ଅଙ୍ଗୀ ।୨୦୬।

ଓଷ୍ଠ-ରଞ୍ଜନରେ ଗୁରୁ ଅଧରୋଷ୍ଠ ରଞ୍ଜି
(ଦେଉଛି ଯା ପକ୍ୱ ବିମ୍ବଫଳ ଶୋଭା ଗଞ୍ଜି) ।୨୦୭।

ଖଞ୍ଜି ଅଙ୍ଗୁଳିରେ ହୀରା ମୁଦି ମନୋରମ
(ଆଣୁଛି ଯା ଚମ୍ପା ଫୁଲେ ଶ୍ୱେତ-ଅଳି ଭ୍ରମ) ।୨୦୮।

ଗୁନ୍ଥି କେଶ ପାଶେ ଧଳା ପୁଷ୍ପ ମନଲୋଭା
(ହରୁଛି ଯା ନୀଳ-ଜଳ-ରାଜହଂସ ଶୋଭା) ।୨୦୯।

ଲମ୍ବାଇ ବକ୍ଷୋଜେ ଗଜ-ମୁକୁତା ଆବଳୀ
(ଦିଶୁଛି ଯା ହର ଶିରେ ଦୁଗ୍‌ଧ ଧାର ଭଳି) ।୨୧୦।

ପାଦେ ଦେଇ ଯତନରେ ଅଳତାର ଗାର
(କରୁଛି ଯା ଇନ୍ଦ୍ର-ଗୋପ ରକ୍ତିମା ଧିକ୍କାର) ।୨୧୧।

ସ୍ୱଦେଶୀୟ ବିଦେଶୀୟ ପନୀର ସିଞ୍ଚନ
କରି ନାନାବିଧ ଫୁଲେ ପଲ୍ୟଙ୍କ ମଣ୍ଡନ ।୨୧୨।

ଶୀତଳ ଜୋଛନା ଆଣି ଗବାକ୍ଷ ଅୟନେ
ଆଲୋକିତ କରି ପୁରଉଦର, ପ୍ରସନ୍ନେ ।୨୧୩।

ଦୂତୀ ପେଶି ପ୍ରିୟ ପାଶେ ଚଢ଼ି କାମରଥ
ଗୁହିଁ ବସିଅଛି ପ୍ରିୟ-ଆଗମନ-ପଥ ।୨୧୪।

× × × ×

କାହିଁ ନବ ପ୍ରୀତି ରସ ଗୃଖିଥିବା ବାଳା
ନ ସହି ଜ୍ୱଳିତ ମାର — ଧନଞ୍ଜୟ ଜ୍ୱାଳା ।୨୧୫।

ଫୁଲାଇ ନାସିକା ପୁଡ଼ା ଉଷ୍ଣ ନିଶ୍ୱାସରେ
ବିବର୍ଣ୍ଣ କରିଣ ଗୁଚ୍ଛ ମନ୍ଦାର ଅଧରେ ।୨୧୬।

କାଢ଼ି ଦେଇ ଚରଣର ବାଜେଣି ପାଞ୍ଜୁଳ
ଶ୍ରୀକର କଙ୍କଣ କଟୀ କିଙ୍କିଣି ମଞ୍ଜୁଳ ।୨୧୭।

ଏକାକିନୀ ପ୍ରେମୀ ପାଶେ କରୁଛି ଗମନ
ଖୋଜେ ଯେଣୁ ଅହରହ ପ୍ରେମ ନିକାଞ୍ଚନ ।୨୧୮।

ଯିବାରୁ ଉଦ୍‌ବେଗ ବଶେ ଚଞ୍ଚଳ ଚଞ୍ଚଳ
ପ୍ରଭଞ୍ଜନ ପ୍ରବାହରେ ଉଡ଼ୁଛି ଅଞ୍ଚଳ ।୨୧୯।

ନ ଥିବାରୁ ଶିର ଦେଶେ ତା ଅବଗୁଣ୍ଠନ
ଇତସ୍ତତଃ ଉଡ଼ି କେଶ ଢାଙ୍କୁଛି ବଦନ ।୨୨୦।

ସେ ନୀଳ କୁଞ୍ଚିତ କେଶୁଁ କୁସୁମ ଖସୁଛି
ବ୍ୟୋମୁଁ ଖସୁଥିବା ଉଲ୍‌କା ପରାଏ ଦିଶୁଛି ।୨୨୧।

ବେଳେ ବେଳେ କାହିଁ ଲାଖି କଣ୍ଟାରେ ବସନ
ନବ ଅଭିସାରିକାକୁ କରୁଛି ଉଛନ୍ନ ।୨୨୨।

× × × ×

କାହିଁ ବିବାହିତ ସ୍ୱାମୀକୁ ତା ନାନା ଛଳେ
ଭୁଲାଇ ଯୁବତୀ ଆସି ସହକାର ତଳେ ।୨୨୩।

"କର୍ଣ୍ଣ ପ୍ରତି ଢଳିଥିଲା ଦ୍ରୌପଦୀଙ୍କ ମନ—
ମୋ ମନ ଢଳିଲେ ଅନ୍ୟେ କିସ ବା ଗର୍ହଣ" ।୨୨୪।

ଯୁକ୍ତି ବାଢ଼ି ମନେ ମନେ ବିଟପ କୋଳରେ
ବସି, ପାପ କାରଯରେ ନିମଜ୍ଜି ଭୋଳରେ ।୨୨୫।

ହସି ହସି କହୁଛି ତା ପାପ ପ୍ରଣୟୀ କି
ଗୋପନାର୍ଥେ ତାଙ୍କ ନିଜ ନିଜ ଭାରତୀକି ।୨୨୬।

ସ୍ପର୍ଶିବାରୁ ପାପ ସିନା ଅବକାର ମନେ
ଗୁପ୍ତ ରଖିବାକୁ ପରକାଶୁଛି ଯତନେ ।୨୨୭।

ନିର୍ଭୀକା ନୋହି ସେ ତନ୍ୱୀ ଜାର ପୁରୁଷରେ
କେମନ୍ତେ ନ ହେବ ଭୟ ପାପ କରମରେ ।୨୨୮।

× × × ×

କାହିଁ କେଉଁଠାରେ କେହି ଯୁବା ଅଭିସାର
କରିବାକୁ ଯାଇ ଭେଟ ନ ପାଇ ପ୍ରିୟାର ।୨୨୯।

କହୁଛି ସେଦିନ ଏହି ଅଶୋକ ମୂଳରେ
ଚୁମ୍ବ ବିହିଥିଲି ପ୍ରିୟା ସ୍ନିଗ୍ଧ କପୋଳରେ ।୨୩୦।

ବକ୍ଷରେ ବକ୍ଷୋଜ ଯୁପି ହୋଇ ଆହ୍ଲାଦିତ
ଶୁଣିଥିଲି ପ୍ରିୟା କର କଂକଣ ସଂଗୀତ ।୨୩୧।

ଛନ୍ଦିଥିଲା ପ୍ରିୟା ମୋର କଣ୍ଠେ ବାହୁଲତା
ଭାବାବଶେ ନଇଁ ପଡ଼ିଥିଲା ଆଖିପତା ।୨୩୨।

ଆମ୍ଭ ଦେହେ ଗୋଟି ଗୋଟି ପଲ୍ଲବ ସୁମନ
ଖସି ପଡ଼ୁଥିଲା ଯୋଗେ ମନ୍ଦ ସମୀରଣ ।୨୩୩।

ଡାଳେ ଡାଳେ ଡେଇଁ ପକ୍ଷୀ ମଧୁର କୂଜନ
କରୁଥିଲେ ଦେଖି ଆମ୍ଭ ମଧୁର ମିଳନ ।୨୩୪।

କିନ୍ତୁ କାହିଁ ଗଲା ଆଜି ପ୍ରିୟା, ମୋର ପ୍ରିୟା
ନାନା ଆଶଙ୍କାରେ ନାଚି ଉଠୁଅଛି ହିଆ ।୨୩୫।

× × × ×

କାହିଁ ବାତାୟନ ପଥେ ପଦ୍ମିନୀ ନାୟିକା
ଚନ୍ଦ୍ର ମୁଖ ଚୁହିଁ ମୁଖ ଚନ୍ଦ୍ର ହେଉଁ ଫିକା ।୨୩୬।

ଗବାକ୍ଷ କିଳି ବିମୁକ୍ତ ବାୟୁରୁ ବଞ୍ଚିତା
ହୋଇ ଏକାକିନୀ ଗୃହେ ପଲ୍ୟଙ୍କ ଆଶ୍ରିତା ।୨୩୭।

କାନ୍ତ ଶୁଭ ମନାସିଣ କରିଛି ଶୟନ
କରିଥିବାରୁ ତା କାନ୍ତ ବିଦେଶ ଗମନ ।୨୩୮।

× × × ×

ଦେଖନ୍ତେ ପଦ୍ମିନୀ ନାୟିକାକୁ ତତକ୍ଷଣେ
ପଦ୍ମିନୀ ଅବସ୍ଥା ଆସି ପଡ଼ିଗଲା ମନେ ।୨୩୯।

ଦେଖିଲା କବି ପଦ୍ମିନୀ ହାରିଛି ସୁଷମା
ସୁଯୋଗରେ ପୀଡ଼ିବାରେ ଲାଗିଛି ଚନ୍ଦ୍ରମା ।୨୪୦।

ପୂର୍ବରୁ ସେ ପତି କାର୍ଯ୍ୟ କଲାପେ ବିମୁଖ
ହୋଇଣ ଶୁଖାଇଥିଲା ବିଷାଦେ ଶ୍ରୀମୁଖ ।୨୪୧।

ପୁଣି ଚନ୍ଦ୍ର ଆସି ଦେଲା କଷଣେ କଷଣ
ଦଗ୍ଧ କ୍ଷତେ ଚୂର୍ଣ୍ଣ ସିନା କରିଲା ଲେପନ ।୨୪୨।

ଉଦ୍ଦୀପ୍ତ ବିରହେ ସେହୁ ହେଲା ଛଟପଟ
ସ୍ୱଭାବେ ତ ନାରୀ ଆହା ସ୍ୱାମୀ ତା ଲମ୍ପଟ ।୨୪୩।

ଦେଖି ତା ଭୀଷଣ ଦଶା ହେଲା ନାହିଁ ରହି
ଶୋକ ବୀତିହୋତ୍ରେ କବି ହୃଦ ହେଲା ଦହି ।୨୪୪।

ସହି ନପାରି ସେ ଜ୍ୱାଳା କରିଲା ଆରମ୍ଭ
ନିର୍ବିଚାରେ କବି ଜୈବାତୃକ ଉପାଲମ୍ଭ ।୨୪୫।

ବିଶ୍ୱେ ପରିଚିତ ତୁହି ବୋଲି ସୁଧାକର
କେମନ୍ତେ ତୋ ଠାରୁ ସତେ ଝରୁଅଛି ଗର ।୨୪୬।

'ଫୁଲଶର, 'କାମ'-ଫୁଲେ ମକରନ୍ଦ ଥାଏ
କିନ୍ତୁ ତାର ଫୁଲଶର ଜଗତ ପୋଡ଼ାଏ ।୨୪୭।

ଶମ୍ବରାରି ମିତ୍ର ବୋଲି ତା' ଗୁଣ ତୋଠାରେ
ରହିଛି କି ଦୋଷାକର ! କହ କହ ବାରେ ।୨୪୮।

ଦେଖ ଦେଖ ବନ୍ଧୁଗଣ ପ୍ରତିବିମ୍ବ ଛଳେ
ବନଜିନୀ ପାଶେ ଆସି ରହିଅଛି ଜଳେ ।୨୪୯।

ସୁବିଧା ନୋହିଲା ପଦ୍ମିନୀକୁ ପୀଡ଼ିବାରେ
ବ୍ୟୋମେ ଥିବାରୁ କି ଏଣୁ ପଶିଗଲା ବାରେ ।୨୫୦।

ମାୟା ଚନ୍ଦ୍ର ରୂପ ଏକ ଗଢ଼ି କି ସତ୍ୱର
ମାୟା ଚନ୍ଦ୍ରେ ବିମଣ୍ଡିତ କରିଛି ଅମ୍ବର ।୨୫୧।

ନୋହିଲେ ତ ପଡ଼ିଥାନ୍ତା ବିଷମ ଚହଳ
"କାହିଁ ଗଲା ଚନ୍ଦ୍ର ଛାଡ଼ି ଆକାଶ ମଣ୍ଡଳ" ।୨୫୨।

ଆକାଶ ମଣ୍ଡଳ ଛାଡ଼ି ପଶିଛି ଶମ୍ବରେ
ଶମ୍ବର ହିଁ ଧରିଅଛି ସାଦରେ ବକ୍ଷରେ ।୨୫୩।

ଶମ୍ବର–ଅରିର ମିତ୍ର ହୋଇଅଛି ଯେଣୁ
ଶମ୍ବରର ଅରି ହେଲା ନିଶାକର ତେଣୁ ।୨୫୪।

ଦେଖା ନାହିଁ ଶୁଣା ନାହିଁ ଏହି ତ ବିଚିତ୍ର
ଶତ୍ରୁ ଦ୍ୱାରା ଶତ୍ରୁ ସତେ ପ୍ରେମେ ଆଲିଙ୍ଗିତ ।୨୫୫।

ଆସ ମୋର ବନ୍ଧୁଗଣ ସୁଉପାୟ ବଳେ
ପଶାଇ ନ ଦେବା ଚନ୍ଦ୍ରେ ଜଳେ ଛାୟା ଛଳେ ।୨୫୬।

ପଦ୍ମିନୀର ଦୁଃଖେ ଉଛୁଳାଇ ଦୁଃଖ ସିନ୍ଧୁ
ଦେଖି ତବ ବନ୍ଧୁ ମୁଞ୍ଚେ ଅଶ୍ରୁ ବିନ୍ଦୁ ବିନ୍ଦୁ ।୨୫୭।

ତୁମେ ବା ବୋଲିବ, "କିମ୍ବା ଡାକୁଛ ଆମ୍ଭଙ୍କୁ
କାହିଁ ସେ ଶକତି ଆମ୍ଭ ଦୁରୂହ କାର୍ଯ୍ୟକୁ" ।୨୫୮।

ତହିଁପାଇଁ ବନ୍ଧୁଗଣ କି ଅଛି ଭାବନା
ଏକତାର ବଳ ଯେଣୁ ଭଲଭାବେ ଜଣା ।୨୫୯।

ପରସ୍ପର ମଧ୍ୟେ ଯଦି ଏକତା ରହିଛି
ଜଗତରେ ଅସମ୍ଭବ ବୋଲି ନାହିଁ କିଛି ।୨୬୦।

ଆସ ବନ୍ଧୁ ଗଣ ଆଉ ବିଳମ୍ବ ନ କର
ବେଳୁଁ ବେଳ ବ୍ୟଥା ସତେ ହେଉଛି ପ୍ରଖର ।୨୬୧।

କରନ୍ତେ ଲୋକନ ବିକଳାଙ୍ଗ ନିଶାକର
ଭାବେ ପୂରିଥିଲା ତବ ବନ୍ଧୁର ଅନ୍ତର ।୨୬୨।

ଭାବ ବଶେ ମନେ ମନେ ବ୍ୟଙ୍ଗେ ଥିଲା ହସି
ଦେଖି ଦେଖି ତବ ବନ୍ଧୁ ଏ ଖଣ୍ଡିତ ଶଶୀ ।୨୬୩।

ଏବେ କରି ହାସ୍ୟେ ଶଶୀ ଧରା ଧବଳିତ
ଦେଲା ପ୍ରିୟ ପଦ୍ମିନୀକି ପୀଡ଼ା ଅକଳିତ ।୨୬୪।

କେହି ହେଲେ ନ ଆସୁଛ ହେ ବାନ୍ଧବମାନେ
କହ ଭଲା ଏହା କିବା ବନ୍ଧୁତାର ମାନେ ।୨୬୫।

× × × ×

ଆଶା ଶୂନ୍ୟ ହୋଇ କବି ଶୂନ୍ୟେ ଗୃହିବାରେ
ମ୍ରିୟମାଣ ହୋଇଗଲା ବନ୍ଧୁ ବ୍ୟବହାରେ ।୨୬୬।

ତହୁଁ କିଛିକ୍ଷଣ ପରେ ତାର ନୟନରେ
ପଡ଼ିବାରୁ ଢଳ ଢଳ ହାସ୍ୟ ତରଙ୍ଗରେ– ।୨୬୭।

ଭାସମାନ କୁମୁଦ କାସାର ମଧ୍ୟେ ଥାଇ
ବୋଇଲା ତାହାକୁ କବି, "ଚନ୍ଦ୍ର କାର୍ଯ୍ୟ ଗୁହିଁ ।୨୬୮।

ହସୁଛୁ କୁମୁଦ ! ହୋଇ ଆନନ୍ଦେ ମଗନ
ଅନ୍ୟ ଦୁଃଖେ ତୋର ହର୍ଷ ହେଉଛି ବର୍ଦ୍ଧନ ।୨୬୯।

ଜାଣିଲି ଜାଣିଲି ତୁହି ପରଶ୍ରୀକାତର
ପ୍ରତିବେଶୀ ଦୁଃଖେ ଯେଣୁ ହର୍ଷିତ ଅନ୍ତର ।୨୭୦।

ରେ କୁମୁଦ ! କୁପ୍ରସଙ୍ଗେ ବଢ଼ୁଛି ତୋ ମୁଦ
ସାର୍ଥକ ହୋଇଛି ତେଣୁ ତୋ ନାମ କୁ-ମୁଦ" ।୨୭୧।

× × × ×

ଅଦୂରେ ଏ ସମୟରେ ହେଲା ଆକର୍ଷିତ
ଚକୋର ଚକୋରୀ କଣ୍ଠ-ନିସୃତ-ସଂଗୀତ ।୨୭୨।

ଶୁଣି କବି ବୁଝିନେଲା ଅର୍ଥ ସଙ୍ଗୀତର
ଅନ୍ୟ କିଛି ନୁହେଁ ଚନ୍ଦ୍ର ସ୍ତୁତି ମାତର ।୨୭୩।

ସୁହା ନ ଯିବାରୁ କବି ବଚନ ରଚନା
କଲା ତାଙ୍କ ପ୍ରତି, "ଚନ୍ଦ୍ର ପ୍ରଦତ୍ତ ଜୋଛନା ।୨୭୪।

ପିଉଛ ବୋଲି ହୋଇଛ କିଛି ନ ବିଗ୍ଭରି
ଅଗ୍ନିଗିଳା-ଚକୋରେ ! କି ତୋଷାମୋଦକାରୀ ? ।୨୭୫।

ନ ଦିଅନ୍ତା ପଛେ ଜ୍ୟୋତ୍ସ୍ନା ବିଭାବରୀକର
ସ୍ତୁତି କରି ବଞ୍ଚିବାଠୁଁ ମୃତ୍ୟୁ ଶ୍ରେୟସ୍କର" ।୨୭୬।

× × × ×

ତହୁଁ କବି ନିରେଖିଲା ତା ଦିବ୍ୟ ଲୋଚନେ
ବ୍ୟାଘ୍ର, ଋକ୍ଷ, ମୃଗ, ବୃକ ଆଦି ଜନ୍ତୁ ଗଣେ ।୨୭୭।

କେତେବେଳେ କିଏ ଆସି ପାନକରି ବାରି
ତୃଷାପନୋଦନ କରି ଯାଉଛନ୍ତି ଗ୍ଭଲି ।୨୭୮।

ଦେଖିଲେ ହେଁ ଦୟନୀୟ ଦଶା ପଦ୍ମିନୀର
କାହା ନେତ୍ରୁ ହେଲେ ଟୋପେ ଗଳୁ ନାହିଁ ନୀର ।୨୭୯।

× × × ×

ସହସା ସୁଦୂର ଶୈବଳିନୀ ତଟ ବନ
ପ୍ରଦେଶରୁ ଚକ୍ରବାକ କରୁଣ ନିସ୍ୱନ ।୨୮୦।

ଭାସି ଭାସି ଆସି ମନ୍ଦ-ଶୀତଳ-ଅନିଳେ
ପଶିଗଲା ଦୀର୍ଣ୍ଣ-ହୃଦ-କବି କର୍ଣ୍ଣ ବିଳେ ।୨୮୧।

ଭାବିଲା ଆକର୍ଣ୍ଣି କବି ଚକ୍ରବାକ ଧ୍ୱାନ
ପଦ୍ମିନୀର ଦୁଃଖେ କୋକେ ହୋଇ ଦଗ୍‌ଧ ପ୍ରାଣ ।୨୮୨।

ପ୍ରତିକାର କିଛି କରି ନ ପାରି ଶେଷରେ
ନଦୀ ବେନି ତୀରେ ନିଜେ ରହି ବିରହରେ ।୨୮୩।

କାନ୍ଦି କାନ୍ଦି କରନ୍ତି କି ଲୋତକ ବର୍ଷଣ
ମୁଖରିତ କରି ନଦୀ ତଟ ପ୍ରାନ୍ତ ବନ ।୨୮୪।

ନୁହେଁ ନୁହେଁ ଏହା ନୁହେଁ ତାହାର କାରଣ
ତାହାର କାରଣ ଏବେ ହୋଇଲା ସ୍ମରଣ ।୨୮୫।

ଏକଦା ତ୍ରେତୟା ଯୁଗେ ପମ୍ପା ସରୋବରେ
କ୍ରୀଡ଼ା ରତୁଥିଲେ କୋକ ଦମ୍ପତି ହର୍ଷରେ ।୨୮୬।

ମିଳିଲେ ଏ କାଳେ ଆସି ବନଗ୍ୱରୀ ବୀର
ରାମଚନ୍ଦ୍ର ସୀତା ସତୀ ବିରହେ ଅଧୀର ।୨୮୭।

ସଙ୍ଗତରେ ଥିଲେ ଭ୍ରାତା ଅନୁଗ ଲକ୍ଷ୍ମଣ
ବେନିଙ୍କର ନେତ୍ର ଆହା ଲୋତକ ଝରଣ ।୨୮୮।

ପୁଛନ୍ତେ କୋକକୁ ରାମ ସୀତାଙ୍କ ଖବର
କଟୂକ୍ତି ଭାଷିଲା ସେହୁ ହୋଇ ରୋଷଭର ।୨୮୯।

ଏଣୁ ରାମ ତତକାଳ ଦେଲେ ଅଭିଶାପ
"ପ୍ରିୟା ବିଛେଦରେ ରହି ଲଭୁଥିବୁ ତାପ" ।୨୯୦।

ଶୁଣି ରଥାଙ୍ଗେ ରଥାଙ୍ଗୀ ବୋଇଲା ଶୋକରେ
ରତି ରସ ଏକା ସାର ସାରା ସଂସାରରେ ।୨୯୧।

ତାହା ବିନା ବଂଶ ଧ୍ୱଂସ ହୋଇବ ଆମ୍ଭର
ଏତେ କହି ବୁହାଇଲା ଧାର ଲୋତକର ।୨୯୨।

ବିଗ୍ୱରି ସେ ଶେଷେ ରାମେ ହୋଇଲେ ବିନୟୀ
ବିଶେଷେ ଚକୋଇ ବୋଲେ, "ପ୍ରଭୁ କୃପା ବହି ।୨୯୩।

'ବୁଝି କେତେ ପକ୍ଷୀ ଜାତି'—ଦୋଷ କ୍ଷମା କର
ଦେଖିଅଛୁଁ ନାରୀ ଜଣେ ରଥେ ବିଂଶକର ।୨୯୪।

ବସାଇ ଦକ୍ଷିଣ ମୁଖେ ଯାଉଥିଲା ଘେନି
ଅଶ୍ରୁ ବରଷଣ କରୁଥିଲେ ନେତ୍ର ବେନି ।୨୯୫।

କର ପ୍ରଭୋ ଏ ଭୀଷଣ ଶାପରୁ ଉଦ୍ଧାର"
ଶ୍ରୀରାମ ବୋଇଲେ, "ଶାପ ନୁହେଁ ଫେରିବାର ।୨୯୬।

କେବଳ ବିଚ୍ଛେଦ କଷ୍ଟ ହେଉଥିବ ରାତି
ବଂଶ ପରମ୍ପରା କ୍ରମେ ଭୋଗିବ ତୋ ଜାତି ।୨୯୭।

ଯାବତ ମୋ ରାମ ନାମ ଥିବ ଜଗତରେ"
ଏହା କହି ଗମିଲେ ସେ ଗନ୍ତବ୍ୟ ମାର୍ଗରେ ।୨୯୮।

ସମ୍ପ୍ରତି ଆସିଛି 'ରାତ୍ରି' ଏଣୁ ସିନା ଖେଦେ
ଛନ୍ତି କୋକ କୋକବଧୂ ରହିଣ ବିଚ୍ଛେଦେ ।୨୯୯।

ପର ଦୁଃଖେ ଦୁଃଖୀ କିଏ ଅଛି ଏ ଜଗତେ
ବିଜଡ଼ିତ ନିଜ ନିଜ ସ୍ୱାର୍ଥରେ ସମସ୍ତେ ।୩୦୦।

ଯଦି ବା ଥିବେ କେ କାହିଁ ହୋଇ ନିକ୍ଷେପିତ
ନ ଆସନ୍ତି କବି ନେତ୍ରେ, ଅହୋ ! କି ବିଚିତ୍ର ।୩୦୧।

ଆସିଲେ ବା କି କରିବେ ନ ଥିଲେ ଶକତି

କରିବାକୁ ବିଭଞ୍ଜନ ଦୁଃଖିନୀ ବିପତ୍ତି ।୩୦୨।

× × × ×

କହ ମୋତେ ସୃଷ୍ଟିକର୍ତ୍ତା ! କେଉଁ କୁତୂହଳ
ବହି କରିଅଛ ସୃଷ୍ଟି ଏ ବିଶ୍ୱ ମଣ୍ଡଳ ? ।୩୦୩।

ତବ ସୃଷ୍ଟ ସଂସାରେ କି ଧରମର ସ୍ଥାନ
ତିଳେ ସୁଦ୍ଧା ନାହିଁ, କହ କହ ଭଗବାନ ! ।୩୦୪।

ଧର୍ମ ପଥ ଅନୁସରି ନିଜେ କଷ୍ଟ ସହି
ଅନ୍ୟର ମଙ୍ଗଳ ପାଇଁ ଯେହୁ ଥାଏ ରହି ।୩୦୫।

ଶେଷ ପରିଣାମ ତାର ହୁଏ କି ଏମନ୍ତ ?
ଦୁଃଖ ପରେ ଦୁଃଖ ତାକୁ ମିଳେ କି ସତତ ? ।୩୦୬।

ତା ଦୁଃଖରେ ଦୁଃଖୀ ହୋଇ ଦୁଃଖୁଁ ପରିତ୍ରାଣ
କରିବାକୁ ତାକୁ ନାହିଁ କି କେ ଶକ୍ତିବାନ ? ।୩୦୭।

କିବା ଗର୍ବି ଅଛ ବିଶ୍ୱ ଦୁଷ୍ଟଙ୍କ ସକାଶେ
ନୀତି, ସଦଗୁଣ ଆଦି ନାହିଁ ଯା'ଙ୍କ ପାଶେ ।୩୦୮।

ସେମାନେ ତ କରନ୍ତି ଏ ମହୀକି ଶାସନ
ସେମାନେ ତ ହୋଇଛନ୍ତି ଐଶ୍ୱର୍ଯ୍ୟ ଭାଜନ ।୩୦୯।

ସେମାନଙ୍କୁ ବିଶ୍ୱପିତା ! ଡର କି ଆପଣ ?
ଡରିଥାଏ ଦୁଷ୍ଟ ପୁତ୍ରେ ଜନକ ଯେସନ ।୩୧୦।

ଏଣୁ କି ନୀରବ ଅଛ କଲେ ହେଁ ଲୋକନ
ତବ ସୃଷ୍ଟ ସଂସାରେ ଏ ସତ୍ୟର ଦଳନ ? ।୩୧୧।

× × × ×

ଆସି 'ପ୍ରଜ୍ଞା' ଏ ସମୟେ ହସ ହସ ମୁଖ
ହୋଇଣ ଦଣ୍ଡାୟମାନ କବି'ର ସମ୍ମୁଖ ।୩୧୨।

ବୋଇଲେ, କି ଘେନି କବି ! କହୁଛ ଏମନ୍ତ
ସତ୍ୟ ଧରମ କି କେବେ ଛାଡ଼େ ଏ ମରତ ।୩୧୩।

ସମୟ କ୍ରମରେ ହେଲେ ଦଳିତ ଏ ବେନି
କମ୍ପି ଉଠେ ବଇକୁଣ୍ଠ ପାପ ଭାର ଘେନି ।୩୧୪।

ହୋଇ ଉଠେ ଥରହର ସ୍ରଷ୍ଟାଙ୍କ ଆସନ
ପ୍ରେରନ୍ତି ମର୍ତ୍ତ୍ୟକୁ ସତ୍ୟ ଧର୍ମ ସଂସ୍ଥାପନ ।୩୧୫।

ପାଇଁକି ବୈକୁଣ୍ଠ ଧାମୁଁ ମହାନ ଆତ୍ମାଙ୍କୁ
ଧର୍ମ ସ୍ଥାପି ପୁଣି ସେହୁ ଫେରନ୍ତି ସେଠାକୁ ।୩୧୬।

ନିଜେ ମଧ୍ୟ ଆସିଥାନ୍ତି ହେଲେ ଦରକାର
ଅବନୀ ପୃଷ୍ଠକୁ ଧରି ନାନା ଅବତାର ।୩୧୭।

ଆସିବେ ଅଳପେ ଏବେ ଅନିନ୍ଦ୍ୟା ସୁନ୍ଦରୀ
ଊଷା-ରାଣୀ ମର୍ତ୍ତ୍ୟେ ଦିବ୍ୟ ଧାମୁଁ ଅବତରି ।୩୧୮।

ଜଣାଇବେ ଊଷାଙ୍କର ଶୁଭ ଆଗମନେ
ସ୍ୱାଗତ ଚରଣାୟୁଧେ ସ୍ୱର ଉତ୍ତୋଳନେ ।୩୧୯।

ପଞ୍ଚମ ତାନରେ ପିକେ ସଙ୍ଗୀତ ଗାୟନେ
କପୋତ କପୋତୀ ବ୍ରାତ ସୁଲଳିତ ସ୍ୱନେ ।୩୨୦।

ପୁଣ୍ୟାତ୍ମା ଉଷା-ରାଣୀଙ୍କ ସେ ଶୁଭାଗମନ
ଦେଖି ଆନନ୍ଦିତ ହେବ ସାଧୁଜନ ମନ ।୩୨୧।

ଲାଗିଯିବ ଦେବାଳୟେ ବିଭୁଙ୍କ ଅର୍ଚ୍ଚନ
ଶଙ୍ଖ ଘଣ୍ଟ ନାଦ ଆହା ତୋଷିବ ଶ୍ରବଣ ।୩୨୨।

ହେବ ସଂକୀର୍ତ୍ତନ ଘରେ ଘରେ ହରିନାମ
ଉଚ୍ଚେ ଉଚ୍ଚାରିବେ ଶୁଆ ସାରୀ "ସୀତା ରାମ" ।୩୨୩।

ହମ୍ବା ରଡ଼ି ଦେବେ ମୁଦେ ଗୋଷ୍ଠରେ ଗୋ-ଧନ
ଗୋପାଳେ ଖୁସିରେ ଦୁଗ୍ଧ କରିବେ ଦୋହନ ।୩୨୪।

ତହୁଁ ପୟ ପାନେ ହର୍ଷେ ପୂରାଇ ଉଦର
ମଜ୍ଜିବେ କୁର୍ଦ୍ଦନ ଖେଳେ ବାଛୁରୀ ନିକର ।୩୨୫।

ବାହାରିବେ ସ୍ୱ ସ୍ୱ ଗୃହୁଁ କୃଷକେ ଉଲ୍ଲାସେ
ଗାଇ ଗାଇ ଗୀତ କ୍ଷେତ୍ର କର୍ଷଣ ସକାଶେ ।୩୨୬।

ଉଡ଼ି ଉଡ଼ି ନାନା ଜାତି ପ୍ରଜାପତି ଗଣେ
ଲାଗିଯିବେ ମହୋଲ୍ଲାସେ ଶୋଭା ବିତରଣେ ।୩୨୭।

ସୁଖଶାନ୍ତି ଗନ୍ଧ ବହି ମନ୍ଦ ପବମାନ
କରିବ ତ ପ୍ରାଣେ ପ୍ରାଣେ ଆହ୍ଲାଦ ପ୍ରଦାନ ।୩୨୮।

ଦେବେନ୍ଦ୍ର ଦର୍ଶନେ କରି କଳଙ୍କ କ୍ଷାଳନ
ପଦ୍ମିନୀ ପାଶକୁ ପୁଣି ଆସିବେ ତପନ ।୩୨୯।

ପ୍ରାଣ ବଲ୍ଲଭଙ୍କୁ ଦେଖି ମୁଦେ ହସି ହସି
ପାଖୁଡ଼ା ମେଲିବ ଖରକିରଣ ପ୍ରେୟସୀ ।୩୩୦।

ବିମୋଚନ ହେବ ତାର ଯାତନା ସକଳ
ଲଭିବ ପଦ୍ମିନୀ ସତୀ ତା ବ୍ରତର ଫଳ ।୩୩୧।

ଦେଖି ପଦ୍ମିନୀର ହର୍ଷ ଗୁଣୁ ଗୁଣୁ ସ୍ୱନେ
ପ୍ରକାଶିବେ ନିଜ ହର୍ଷ ମଧୁନିସୂଦନେ ।୩୩୨।

ବିଚ୍ଛେଦାନ୍ତେ ଚକ୍ରବାକ ମହା ଆନନ୍ଦରେ
ବିଳସିବ ପ୍ରିୟା ସଙ୍ଗେ ଦ୍ୱିଗୁଣ ସ୍ନେହରେ ।୩୩୩।

କାଳେ ହୋଇଥାଏ ମହାପୁରୁଷଙ୍କ ଦତ୍ତ–
ଅଭିଶାପ ମଧ୍ୟ ଆଶୀର୍ବାଦେ ପରିଣତ ।୩୩୪।

ଭାଙ୍ଗିଯିବ ବଳ ଚୌର ଖଣ୍ଡମାନଙ୍କର
ଛାଡ଼ିବେ କୁକର୍ମ ବୀଟ ବିଟପୀ ନିକର ।୩୩୫।

ଦେଖି ଦେଖି କେତେ ରହିଯିବେ ନୀରବରେ
ଲୁଚିବେ କେହୁ ବା ଯାଇ ପର୍ବତ କନ୍ଦରେ ।୩୩୬।

ନିଷ୍ପ୍ରଭ ହୋଇବ କେହୁ, କେହୁ ବା ନିସ୍ତେଜ
ଏ ପ୍ରକାରେ ପାପୀଙ୍କର ଭାଙ୍ଗିଯିବ ତେଜ ।୩୩୭।

ଦେଖ କବି ! ଏଠାରେ ହିଁ ଅଛି ବୋଲି ଧର୍ମ
ହୋଇଅଛି ପ୍ରମାଣିତ, ରାତ୍ରି ପାପକର୍ମ–।୩୩୮।

ଯୋଗୁଁ ପ୍ରାପ୍ତ କରିଅଛି ବିକଳାଙ୍ଗ ପତି
ଜାଣ, ପାପ କରି କେହୁ ନ ପାରେ ବରତି ।୩୩୯।

ବିଚଳିତ ନୋହିଁ ଏଣୁ ଧର୍ମେ ରଖ ମତି
ଧର୍ମ ବଳେ ଏକା କବି ! ମିଳଇ ସୁଗତି” ।୩୪୦।

ଗୋଟି ଗୋଟି କରି କବି ‘ପ୍ରଜ୍ଞା’ଙ୍କ ବଚନ
କରିଲା ଶ୍ରବଣ ସତେ ହୋଇ ଏକ ମନ ।୩୪୧।

ଭାରତୀ ‘ପ୍ରଜ୍ଞା’ଙ୍କ କେବେ ନ ହୁଏ ଅନ୍ୟଥା
ଧଇର୍ଯ୍ୟ ଧରିଣ ଶେଷେ ଲଭିଲେ ହେଁ ବ୍ୟଥା ।୩୪୨।

ସତ୍ୟ ଧର୍ମ ସ୍ଥାପୟିନୀ ଉଷା ଆଗମନେ
ଅନାଇଁ ରହିଲା କବି ସଜଳ ନୟନେ ।୩୪୩।।

———

ସୀତାରାମ ଶରଣ•

## ଅନ୍ତର୍ବ୍ୟଥା'ର, ଅନ୍ତର୍ନିହିତ କତିପୟ ଶବ୍ଦାବଳୀର ଅଭିଧାନ

ଅଚଳ -ପର୍ବତ

ଅଞ୍ଚଳ—ପଣତ

ଅର୍ଯ୍ୟମା—ସୂର୍ଯ୍ୟ

ଅପତ୍ୟ—ସନ୍ତାନସନ୍ତତି

ଅପନୋଦନ—ଖଣ୍ଡନ, ଉପଶମ

ଅବଗୁଣ୍ଠନ—ଓଢ଼ଣା

ଅଭିରଙ୍ଗୀ—ନାୟକ ପ୍ରତି ଅନୁରକ୍ତା

ଅଭିରାମା—ଅଭିରାମର ସ୍ତ୍ରୀ ଲିଙ୍ଗ, ସୁନ୍ଦର

ଅଭ୍ର—ମେଘ

ଆଟୋପ—ବଡ଼େଇ

ଆର୍ତ୍ତି—ଦୁଃଖ

ଆର୍ତ୍ତୀ—ଦୁଃଖିନୀ

ଆସ୍ୟ—ମୁଖ

ଇନ୍ଦ୍ରଗୋପ—ପାଟକିରା, ବର୍ଷାଦିନରେ ମାଟିରେ ବାହାରୁଥିବା ମଖମଲ ପରି କୋମଳ ଏବଂ ଲାଲରଙ୍ଗର ପୋକ ବିଶେଷ ।

ଈ—

ଉଞ୍ଛ୍ୟ—ଯାହା ପରିତ୍ୟକ୍ତ ଏବଂ ସଂଗ୍ରହ କରିବାର ଯୋଗ୍ୟ ।
ଯଥା :—ଧାନ କାଟିନେଇ ସାରିବା ପରେ ଯେଉଁ ଧାନକୁ ଗରିବ ପିଲାମାନେ ସଂଗ୍ରହ କରନ୍ତି ତାହା ଉଞ୍ଛ୍ୟ ଧାନ ।
ଉଞ୍ଛ—କୋଲ୍‌ଜିବା

ଉପାଲମ୍ଭ—ଗାଳି, ନିନ୍ଦାପୂର୍ବକ ତିରସ୍କାର

ଊ—

ଋ—

ୠ—

ଏ—

ଐ—

ଓଷ୍ଠରଞ୍ଜନ—ଯହିଁରେ ଓଷ୍ଠ ରଞ୍ଜନ କରାଯାଏ, ଲିପ୍‌ଷ୍ଟିକ୍

ଊ—

କାଳିକା—କାଳୀ

କାଳିକା—ମେଘ

କାସାର—ପୁଷ୍କରିଣୀ, ପୋଖରୀ

କୁ—ପୃଥିବୀ

କୁକ୍ଷି—ପେଟ

କୃତାନ୍ତ—ଯମ

ଖ—

ଗବାକ୍ଷ—ଝରକା

ଗର—ବିଷ

ଗର୍ହଣ—ନିନ୍ଦା, ଅଭିଯୋଗ

ଘୃଣିନିଧି—ସୂର୍ଯ୍ୟ

ଙ—

ଚରଣାୟୁଧ—କୁକୁଡ଼ା

ଚକ୍ର—ଚକ୍ରବାକ ପକ୍ଷୀ

ଚୂର୍ଣ୍ଣ—ଚୂନ

ଛ—

ଜ୍ୱଳନ—ଅଗ୍ନି

ଜୈବାତୃକ—ଚନ୍ଦ୍ର

ଝ—

ଞ—

ଟ—

ଠ—

ଡାକରା—ଏକ ପ୍ରକାର ତୀବ୍ର ବିଷ ଲତାର ନାମ

ଢ—

ଣ—

ତେଜ—ପରାକ୍ରମ, ଶକ୍ତି, ପ୍ରତାପ, କାନ୍ତି
ତୈଳପାଇକା—ଝୁର୍‌ଲା ନାମକ ପୋକ, ଅସରପା
ତୁଦନ—ବ୍ୟଥା
ତ୍ରପା—ଲଜ୍ଜା, ମନ୍ଦାକ୍ଷ, ନଟୀଡ଼ିକା

ଥ—

ଦୋଷାକର—ଦୋଷର ଖଣି
ଦୋଷାକର—ନିଶାକର, ଚନ୍ଦ୍ର
ଦ୍ୟୁତି—କିରଣ, ଆଲୋକ

ଧନଞ୍ଜୟ—ଅଗ୍ନି
ଧୂମଯୋନି—ମେଘ
ଧ୍ୱାନ—ଶବ୍ଦ

ନର୍ମ—ପରିହାସ, କ୍ରୀଡ଼ା, ଲୀଳା, କୌତୁକ, ବିହାର

ପନୀର—ସୁବାସିତ ଜଳ, ଅତର
ପାଣିକୁମ୍ଭା-ମାଟିଆ ବର୍ଣ୍ଣ ବିଶିଷ୍ଟ ରାତ୍ରିରେ ଶବ୍ଦ କରିବା—
ଏକ ପ୍ରକାର ପକ୍ଷୀ
ପାଞ୍ଜୁଳ—ପାଦର ଭୂଷଣ ବିଶେଷ
ପିତୃପ୍ରସୂ—ସନ୍ଧ୍ୟା
ପୂଷଣ—ସୂର୍ଯ୍ୟ
ପ୍ରତିବେଶୀ—ପଡ଼ୋଶୀ

ଫ—

ବର୍ବରୀ—ବର୍ବରର ସ୍ତ୍ରୀ ଲିଙ୍ଗ, ଦୁଷ୍ଟା
ବର୍ଷବର—ନପୁଂସକ
ବାର—ଜଳ
ବାରୁଣୀ—ମଦ, ସୁରା
ବାରୁଣୀ—ପଶ୍ଚିମ ଦିଗ
ବିରୋଚନ—ସୂର୍ଯ୍ୟ

ବାଳିଶ—ମୂର୍ଖ
ବିଶ୍ୱଲୋଚନ—ସୂର୍ଯ୍ୟ
ବିଷ୍ଣୁପଦ—ଆକାଶ
ବୀତିହୋତ୍ର—ଅଗ୍ନି
ବୈଶ୍ୱାନର—ଅଗ୍ନି
ବ୍ରଧ୍ନ—ସୂର୍ଯ୍ୟ
ବ୍ରଜ—ସମୂହ
ବ୍ରାତ—ସମୂହ

ଭବିନ—କବି, କାବ୍ୟକାର
ଭାରତୀ—ବଚନ, କଥା, ବାକ୍ୟ
ଭୁବନ—ଜଳ

ମଧୁନିସୂଦନ—ଭ୍ରମର
ମାର—କାମଦେବ, କନ୍ଦର୍ପ
ମିତ୍ର—ସୂର୍ଯ୍ୟ
ମ୍ରିୟମାଣ—ମୃତକଳ୍ପ, ମୃତପ୍ରାୟ, ଅତିଲଜ୍ଜିତ
ମୁମୂର୍ଷୁନ—ମେଘ

ଯୋପନ—ଅତ୍ୟାଗ୍ରର ସହଯୋଗେ ନିଗୃହୀତକରଣ, ପୀଡ଼ନ

ରସା—ପୃଥିବୀ
ରାଇ—ଡାକି, ଡାକଦେଇ

ଲ—
(ବ) ବ—

ଶମ୍ବର—ଜଳ
ଶମ୍ବର ଅରି—ଶମ୍ବର ନାମକ ରାକ୍ଷସର ଅରି, ଶମ୍ବରାରି, କାମଦେବ
ଶାତ—ଆନନ୍ଦ
ଶୁନ—ସୁଖ
ଶୈବଳିନୀ—ନଦୀ

ଷ—

ସ୍ୱାମିନୀ – ସ୍ୱାମୀର ସ୍ତ୍ରୀ ଲିଙ୍ଗ, ଗୃହିଣୀ, ବିବାହିତା ସ୍ତ୍ରୀ

ସୁସାର – ପାରଗତା, ସହଜ

ସ୍ତନୟିତ୍ନୁ – ମେଘ

ସଂହନନ – ଶରୀର

ସଂପ୍ରତି – ବର୍ତ୍ତମାନ

ହର୍ମ୍ୟ – ଅଟ୍ଟାଳିକା, ପ୍ରାସାଦ

କ୍ଷପା – ରାତ୍ରି

ଲ –

ୟ –

ନୀଳଲୋହିତ ସିଂହଦେବ, ପଞ୍ଚାୟତ ଖଡ଼ିଆଳଙ୍କ
ବିରଚିତ ପ୍ରକାଶିତ ପୁସ୍ତକ

(୧) ଛାୟା – ୧୯୮୦ ଖ୍ରୀ: ଅ: ରେ ପ୍ରକାଶିତ

ପ୍ରକାଶକ –
ଖଡ଼ିଆଳ ସାହିତ୍ୟ ସମିତି, ଖଡ଼ିଆଳ

(୨) ତୃଷା – ୧୯୮୩ ଖ୍ରୀ. ଅ: ରେ ପ୍ରକାଶିତ

ପ୍ରକାଶିକା
ଶ୍ରୀମତୀ ବିଜୟଲକ୍ଷ୍ମୀ ଦେବୀ
ଖଡ଼ିଆଳ ରାଜପ୍ରସାଦ
ପୋ:ଅ: ଖଡ଼ିଆଳ
ପିନ୍ – ୭୬୬୧୦୭